

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଶ୍ରୀଯୁକ୍ତ ରାମଚନ୍ଦ୍ର ମହାନ୍ତି  ନିଜ ସିଦ୍ଧି ଓ ସାଫଲ୍ୟର ପରିଚୟ ଦେଇଛନ୍ତି। ସାହିତ୍ୟ-ସାଧନା ତାଙ୍କ ପାଇଁ ପେଶା ନୁହେଁ, ସେ ଏହାକୁ ଏକ ଦୁର୍ବାର ନିଶା ଓ ତପସ୍ୟା ଭାବରେ ଗ୍ରହଣ କରିଅଛନ୍ତି। ସରକାରୀ ଚାକିରୀରୁ ଅବସର ନେବା ପରେ ସେ ଏହି ସାରସ୍ୱତ କର୍ମରେ ନିଜକୁ ନିୟୋଜିତ କରିଛନ୍ତି ଓ ନିରବଚ୍ଛିନ୍ନ ତଥା ନିରଳସ ଭାବରେ ବାଣୀ ଆରାଧନା କରି ବହୁ ଉପାଦେୟ ରତ୍ନ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଦାନ କରିଛନ୍ତି।

ମୋର ପରମ ସୌଭାଗ୍ୟ, ପିଲାଦିନରୁ ଆଜିଯାଏ ମୁଁ ସବୁଦିନେ ବାପାଙ୍କ ପାଖରେ ହିଁ ରହି ଆସିଛି। ତାଙ୍କ ଜୀବନର ଘଟଣା ପ୍ରବାହ ସଙ୍ଗେ ମୁଁ ମଧ୍ୟ ସଂପୃକ୍ତ। ତାଙ୍କର ଭାବଧାରା ସହିତ ଯେତେ ପରିଚିତ ହେଲେ ବି ତାଙ୍କ ପ୍ରକାଶିତ ଲେଖା ଓ ସେଥିରେ ଥିବା ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ମୋ ପାଇଁ ମହାର୍ଘ ସମ୍ପଦ ଭଳି।

ଯଦିଚ ଗତ ପଚିଶ ବର୍ଷ ଭିତରେ ନିୟମିତ ବ୍ୟବଧାନରେ ବାପାଙ୍କର ବହି ଖଣ୍ଡେ ଖଣ୍ଡେ ପ୍ରକାଶ ପାଉଥାଏ, ଓ ଏପରି ମୋଟ ବାରଖଣ୍ଡ ବହି ରହିଛି, ଏବେ ମାତ୍ର ସେ ସବୁ ଭଲଭାବେ ପଢିବାକୁ ମୋର ଆଗ୍ରହ ହେଲା। ପଢିଲାରୁ ମୁଁ ସ୍ଥିର କଲି ଯେ, ସବୁ ବହିରୁ କିଛି କିଛି ଲେଖା ଚୟନ କରି ସେଗୁଡିକୁ ବାପାଙ୍କ ସାହିତ୍ୟକୃତିର ଗୋଟିଏ ସଂକଳନ ଆକାରରେ ନୂତନ କଳେବରରେ ପୁନଃ ପ୍ରକାଶିତ କରିବି।

ବାଛିଥିବା ଲେଖାଗୁଡ଼ିକୁ ମୁଁ ଛ'ଟି ଶୀର୍ଷକରେ ସଜାଇ ଦେଇଛି। ସେଗୁଡ଼ିକ ହେଲା: ଜଣାଣ, ଅନ୍ତର୍ଦୃଷ୍ଟି, ଆତ୍ମକଥା, ସ୍ୱର୍ଗକୁ ଚିଠି, ଆତ୍ମ ଚିନ୍ତନ ଓ ଅନ୍ତଃସ୍ୱର। ସଂକଳନର ନାମକରଣ 'ବାପାଙ୍କ ନିଜକଥା' ଓ ତାହାର କଥିତ ଛ'ଟି ବିଭାବରୁ ଏହାର ବିଷୟବସ୍ତୁ ସମ୍ବନ୍ଧରେ ବେଶ ଅନୁମାନ କରିହେବ। ଏହି ପ୍ରତ୍ୟେକଟି ଲେଖାରେ ଏମିତି ଉପାଦାନ ଭରି ରହିଛି ଯାହା ବାପାଙ୍କୁ ସମୀପରେ ପାଇବାର, ତାଙ୍କ ସଙ୍ଗେ ଆଳାପ ଆଲୋଚନା କରିବାର, ଅବା ତାଙ୍କୁ ଅବାରିତ ମନେ ପକାଇବାର ମୁହୂର୍ତ୍ତମାନଙ୍କୁ ଟୋକି. ଧରିବ।

ସୁରେଶ ଚନ୍ଦ୍ର ମହାନ୍ତି

।ସୂଚୀ।

॥ ୧ ॥

ଯେତେ ଡାକିଲି ବିକଳ ହୋଇ,
କାନ କୁଆଡ଼କୁ ଦେଲ ସାଇଁ ?

ମୋର ଦୁଃଖ ତ ଶୁଣିଲ ନାହିଁ,
ଦୁଃଖେ ଦିନଗଲା ଶେଷ ହୋଇ।

ତୁମ କାଲୁଆ ଅଦିଆ ଢଙ୍ଗ,
ମନୁ ପୋଛିଦେଲା ସବୁ ରଙ୍ଗ।

ଇହ ଯାହା ତ ହେବାର ହେଲା,
ଏବେ ପର ଚିନ୍ତା ବାଇ କଲା।

ଇହ ପରି ତା ନ ହେଉ ଫାଙ୍କା,
ଦୟା ବହି ଦୂର କର ଶଙ୍କା।

ନାମ ଜପ ଏକକ ସାଧନ,
କରି ଆସିଛି ସାରା ଜୀବନ।

ଆଉ କୁଆଡ଼େ ନ ଯାଉ ମନ
ସେହି ନାମ ଜପେ ରହୁ ଧ୍ୟାନ।

ତୁମ ଜଣାଣ ଗାନରେ ଭୋଳ,
ହୋଇ କଟିଯାଉ ମୋର ବେଳ।

ଗାଉ ଗାଉ ପୁଣି ସେ ଜଣାଣ,
ଛାଡ଼ି ଯାଉ ଏ ଦୁଃଖ ଜୀବନ।

ତୁମ ପଦରେ ହେଉ ତା ଲୀନ,
ଆଉ ନ ଫେରୁ ମର୍ତ୍ତ୍ୟ ଭୁବନ।

## ॥ ୨ ॥

ଭାବ ବିନୋଦିଆ କହିବୁକି ଥରେ
ତୋ ଭାବର କେଉଁ ଅର୍ଥ,
ଗଜେନ୍ଦ୍ର, ମୃଗୁଣୀ, ଦ୍ରୌପଦୀ ଜାଣିଲେ
ମୁଁ କି ନୁହଁଇ ସମର୍ଥ ?

ତାଙ୍କ ଭାବ ତୋର ମନକୁ ଘେନିଲା
ମେଣ୍ଟାଇଲୁ ତାଙ୍କ ସାଦ,
ମୋ ଡାକରେ କ'ଣ ନାହିଁ ସେହି ଭାବ
ମୋଠାରେ ସାଧୁଛୁ ବାଦ ।

ଭାବ ନାହିଁ ଯେବେ ଯେତେ ଡାକିଲେ ବି
ତୋ କାନେ ପଶଇ ନାହିଁ,
କାଳ ତ ପୂରିଲା, ଭାବ ବୁଝିଲିନି
ବୃଥା ଡାକ କାହିଁପାଇଁ ?

ଯିଏ ବୁଝିଛନ୍ତି ଭାବାର୍ଥ ତୋହର
ତାଙ୍କୁ ଘେନି ତୁ ଥାଆ,
ଅବୁଝାଙ୍କ କଥା ଅବୁଝା ପଛକେ
ରହୁ ଭାବ ବିନୋଦିଆ ।

|| ୩ ||

ମାୟାକୁ ଉପେକ୍ଷି ପ୍ରଭୁ ତୁମ ଆଶ୍ରା କଲି
ଅହରହ ବସି ନାମ ବିଭୂତି ଚିନ୍ତିଲି ।

ଲଭିବି କରୁଣାତବ ସୁଖେ ଦିନ ଯିବ
ଆଶା ଆଶାରେ ରହିଲା ଭୋଗେ ପରାଭବ,
ମାୟାସେବୀ ବନ୍ଧୁପାଖେ ନିନ୍ଦନ ଯା ହେଲି ।

ଭକତ ବତ୍ସଳ ବାନା ଉଡ଼େ ଫର ଫର
ସତେ କି ଦୁଃଖ ତାହାର ବିମୋଚନ କର
ସନ୍ଦେହରେ ମନ ମୋର ଯାଉଛି ଚହଲି ।

ଭକ୍ତିରେ ମୋ ଯେବେ ତ୍ରୁଟି ସତକରି କୁହ,
ଜାଣିଲେ ମନରୁ ମୋର ତୁଟିଯିବ ମୋହ
ସ୍ୱଚ୍ଛ ଭକ୍ତିପାଇଁ ଦେବି ମନପ୍ରାଣ ଖୋଲି ।

## ।। ୪ ।।

ଭାବକୁ ନିକଟ ତୁମେ ଅଭାବକୁ ଦୂର
ଭାବ କ'ଣ ନାହିଁ ମୋର ମୋପାଇଁ ନିଷ୍ଠୁର।

ଗଜ ମୃଗୁଣୀ ଦ୍ରୌପଦୀ ଡାକିଲେ କାତରେ
ଡାକ ଶୁଣି ଦୁଃଖ ତାଙ୍କ ନିବାରିଲ ହେଲେ
ମୋ ଡାକ ବେଳକୁ କିମ୍ବା ହୁଅ ହେ ବଧିର।

ଭାବପ୍ରିୟ ଭାବଅର୍ଥ ଦିଅ ହେ ସୂଚାଇ,
ଜାଣିଲେ ସନ୍ଦେହ ମନୁ ଯିବ ଦୂର ହୋଇ
ଭାବ ବିହ୍ୱଳ ହୋଇଣ ଡାକିବି ଏଥର।

ଯେଉଁଭାବ ଗଜ ଅବା ମୃଗୁଣୀର ଡାକେ
ମୋହିଥିଲା ମନ ତବ ସେ ଭାବରୁ ଟିକେ
ସଞ୍ଚାରି ଦିଅ ମନରେ ଦୁଃଖ ହେଉ ଦୂର।

|| ୫ ||

ଭିନ୍ନରୂପ ଭିନ୍ନ ନାମେ ଯେତେ ଯେତେ ସୁଖ
ରହିଛି ଜଗତେ ପ୍ରଭୁ ତୁମେ ତାଂ ମାଲିକ।

ମନଇଚ୍ଛା ବାଣ୍ଟ ତାହା ନାହିଁ କଟକଣା,
କିଏ ସେ ମେଣ୍ଟାଏ କିଏ ପାଏନା ବାସନା,
ଆପତ୍ତି କରିବୁ କା'କୁ ତୁମେ ବଡ଼ ଲୋକ।

କୋଠାରେ ରହିଛି ଯିଏ ଗାଡ଼ି ତାକୁ ଦିଅ,
କୁଟୀର ବାସୀକୁ ନେଇ ଗଛମୂଳେ ଥୁଅ,
ସୁଖୀକୁ ଅଧିକ ସୁଖ ଦୁଃଖୀକୁ ବିପାକ।

ପଖାଳ ଖାଇଛି ଯିଏ ତା ପାଇଁ ପାୟସ
ନ ଖାଇଛି ଯିଏ ଆଦୌ ତାପାଇଁ ଓପାସ,
ଏ ବିଷମ ନିୟମରେ ପାଳୁଛ ମୂଲକ।

ନିରପେକ୍ଷ ବୋଲି ତୁମେ ଶାସ୍ତ୍ରର ଘୋଷଣା
କର୍ମଫଳ କହି ଆମେ ପାଉଛୁ ସାନ୍ତ୍ୱନା,
ସଉକିରେ ଡାକୁଥାଉ ହୋଇ ଅଳାଜୁକ।

|| ୬ ||

ଶାସ୍ତ୍ର କହେ ପ୍ରଭୁ ତୁମେ ଏକମାତ୍ର ଦାତା,
ପୂଜାପାଠ ପ୍ରାର୍ଥନାର ତୁମେ ହିଁ ଗ୍ରହୀତା ।

କାହାକୁ କଅଣ ଦିଅ ଜଣାନାହିଁ ମୋତେ
ପାଇନାହିଁ କିଛି ପ୍ରଭୁ ଡାକୁଛି ନିରତେ,
ଡାକିଲେ ଡାକ ଶୁଣୁନା କି ପ୍ରକାର କଥା ।

ନ ଦେଇଣ ତୁମେ ପ୍ରଭୁ ଦାତା ହୋଇଗଲ
ନଶୁଣିଣ ଡାକ ପୁଣି ଗ୍ରହୀତା ସାଜିଲ
ଗୁଣ କର୍ମ ବିଚାରର ରହେନି ମାନ୍ୟତା ।

ଅନୀତି କି ନୀତି ଏହା ତୁମକୁ ଗୋଚର
ଆମ ପ୍ରାପ୍ୟ ପାଇଁ ଆମେ ଚାହୁଁ ସୁବିଚାର
ଦାତା ଗ୍ରହୀତା ପଦର ରହୁ ସାର୍ଥକତା ।

# ।। ଥୁଣ୍ଟା ଗଛ ।।

ପଥପ୍ରାନ୍ତେ ଠିଆ ଥୁଣ୍ଟାଗଛଟିଏ
ଦେଖି ମନେ ଜାଗେ ଭାବ,
ସବୁଦିନେ କ'ଣ ଥିଲା ଏ ଏପରି
ନଥିଲା କିଛି ବିଭବ ?

ଗଣ୍ଡିଟି ତାହାର ଦିଅଇ ସୂଚନା
ଥିଲା ସେ ବିଶାଳ ବୃକ୍ଷ,
କାଳର ପ୍ରଭାବେ ହରାଇ ସର୍ବସ୍ୱ
ଆଜି ସେ ସାଜିଛି ରକ୍ଷ।

ଝଡ଼ିଗଲା ପତ୍ର ଥୁଣ୍ଟା ବନାଇଲା
ହୋଇଲା ଶୁଷ୍କ ନିରସ,
ନୂତନ ଶାଖା କି ପ୍ରଶାଖା ତା ଦେହେ
ହେଲାନି ଆଉ ବିକାଶ।

ଶୁଷ୍କ ଗଣ୍ଡି ତା'ର ଠିଆ ହୋଇ ରହେ
ମଲାପରି ମାଟି ପରେ,
ଅତୀତ ଦିନର ଘଟଣାବଳୀ କି
ଆସେନି ତା ମାନସରେ ?

ଅତୀତ ଭାବନା ଛାଡ଼େନା ଆମକୁ
ଛାଡ଼ିବ କାହିଁକି ତାକୁ,
ଯାହା ସେ ଭାବଇ ଅକୁହା ହେଲେ ହେଁ
ଅଜଣା ରହେନି କା'କୁ।
ଯୌବନ କାଳରେ ପତ୍ର ପୁଷ୍ପ ଫଳେ
ଭରା ଥିଲା ତା'ର ଦେହ,

ସୁନ୍ଦର ବପୁତା ଜଗତବାସୀଙ୍କ
ମନେ ଜନ୍ମାଇଲା ମୋହ।

କେତେ ସରୀସୃପ କେତେ ପକ୍ଷୀଙ୍କର
ଥିଲା ସେ ନିବାସ ସ୍ଥଳ,
କୂଜନ, କାକଳୀ ଭରା ରହୁଥିଲା
ନିଘଞ୍ଚ ତା ଅନ୍ତଃସ୍ଥଳ।

ନିଦାଘ ସମୟେ ଅବା ବର୍ଷାବେଳେ
ପଥିକେ ତା ମୂଳେ ବସି,
ଖରା ତାତି କଷ୍ଟ ପୁଣି ବର୍ଷାଦାଉ
ହାରୁଥିଲେ ହସି ହସି।

ଫଳ ଲାଭ ପାଇଁ ତା ଦେହ ଉପରେ
ଚଢ଼ାଉ କେତେ ନହୁଏ,
ନିଜେ ନ ସହିଲେ କଷ୍ଟ, ଅନ୍ୟର କି
ଉପକାର ସାଧି ହୁଏ ?

ସମ୍ପଦଶାଳୀର ଚୌରଭୟ ପରି
ବତାସକୁ ତା'ର ଡର,
ଭରା ଦେହ ତା'ର ବାଆ ବତାସରେ
ହୁଏ ବହୁ କଲବଲ।

ପରିପୂର୍ଣ୍ଣ ବପୁ ସମ୍ବଳ ତାହାର
ତାହାରି ମାଧମେ ସିଏ,
କେତେ ଉପକାର ନକରିଅଛି ଯେ
ହିସାବ କେ ତା'ର ନିଏ ?

ଅଦରକାରୀ ସେ ହୋଇଅଛି ଏବେ
ହରାଇ ତା ବପୁ-ବିତ୍ତ,
ଉପକାର ପ୍ରାପ୍ତ ପ୍ରାଣୀଙ୍କ ସହିତ
ହୁଏ କି ଆଉ ସାକ୍ଷାତ ?
ପକ୍ଷୀ, ପଥଚାରୀ, ଫଳାଶାୟୀ, ବାତ୍ୟା
ତେଜି ଅଛନ୍ତି ସକଳେ,

ସମ୍ପୂର୍ଣ୍ଣ ନିଃସଙ୍ଗ ସର୍ବ ପରିତ୍ୟକ୍ତ
ଦଣ୍ଡାୟମାନ ବିକଳେ।

ଗଛର ବାରତା ଭେଦିଲା ଅନ୍ତର
ସୃଷ୍ଟିକଲା ଭାବାନ୍ତର,
ଗଛ ଛାଡ଼ି ମନ ସ୍ୱଅବସ୍ଥା ଚିନ୍ତା
କଲା ହୋଇ ହରବର।

ସଯତ୍ନେ ଖୋଜିଲା ଅଛିକି ଭିନ୍ନତା
ତା'ର ମୋର ଅବସ୍ଥାରେ,
'ନାହିଁ' 'ନାହିଁ' ବୋଲି ମିଳିଲା ଉତ୍ତର
ସମଦଶା ଉଭୟରେ।

କହିଲା ପୁଣି ସେ ଚେତାବନୀ ଦେଇ
ଥୁଣ୍ଟାଗଛ ସମ ତୁହି,
ସବୁରି ମନରୁ ନେଲୁଣି ବିଦାୟ
କେହି ତୋ ସାଥିରେ ନାହିଁ।

ଔପଚାରିକତା ଛଳେ ସମ୍ଭାଷଣ
ବେଳେ ବେଳେ ଯାହା ମିଳେ,
ସେତିକ ବି ଦିନେ ହରାଇ ବସିବୁ
ହୁସିଆର ନ ରହିଲେ।

ହୁଅନାହିଁ ମନ ଏଥେ ବିଚଳିତ
ନୁହେଁ ଏ ନୂତନ କଥା,
ଜାଣିରଖ ତୁହି ସମ୍ବଳ ହୀନର
ଚିରସାଥୀ ନିଃସଙ୍ଗତା।

## ।। କ୍ଷମତା ।।

କାମିନୀ, କାଞ୍ଚନ ମାନ, ମର୍ଯ୍ୟାଦାର
ଲାଭରେ ଆସକ୍ତ ନର,
ମାତ୍ର କ୍ଷମତାର ଅଧିକାରୀ ହେଲେ
ଏସବୁ ନ୍ୟୂନ ବିଚାର ।୧।

କ୍ଷମତାନୁଗାମୀ ଅଟନ୍ତି ଏମାନେ
କ୍ଷମତାର କରାୟତ୍ତ,
ହୁଅନ୍ତି ସହଜେ ତେଣୁ କ୍ଷମତାଟି
ସର୍ବଶ୍ରେଷ୍ଠ ବିବେଚିତ ।୨।

କ୍ଷମତାର ମଧୁ ଚାଖିଛି ଯେ ଥରେ
ଛାଡ଼ିକି ପାରେ ସହଜେ,
ଅବିଚ୍ଛିନ୍ନ ଭାବେ ଉପଭୋଗ ପାଇଁ
ନାନା ଉପାୟ ସେ ଖୋଜେ ।୩।

ପ୍ରତିଦ୍ୱନ୍ଦ୍ୱୀ ଯଦି ଜୁଟିଗଲେ ହୁଏ
ପରିଣତିଟି ବିଷମ,
ହିଂସା, ଦ୍ୱେଷ, ମିଥ୍ୟା ଆଦି ଅପଚାର
ସ୍ୱଭାବେ ନିଏ ଜନମ ।୪।

ତା ସଙ୍ଗେ ସମାନ କେହି ନୁହେଁ ବୋଲି
ଭାବେ କ୍ଷମତାଧିକାରୀ,
ହେୟ ଭାବ ବହି ଆତ୍ମୀୟ ସ୍ୱଜନେ
ପାଖୁ ଦିଏ ଦୂର କରି ।୫।

ଅଛି କି ବିଭାଗ ଆମ ସମାଜରେ

ଯହିଁ ନାହିଁ ୟାର ଖେଳ,
ଅଛି କି ମଣିଷ ହୋଇନାହିଁ ଯିଏ
କ୍ଷମତା ନିଶାରେ ଭୋଳ ? ।୬।

କ୍ଷମତାର ନିଶା ପୋଛିଦିଏ ମନୁ
ଯେତେ ଯେତେ ନୀତିବାଣୀ
ଭୁଲାଇ ବି ଦିଏ 'କାଳ' କାରସାଦି
ସାରେ ଯିଏ ସବୁ ଠାଣି ।୭।

ଅଭାବିତ ଭାବେ ପହଞ୍ଚେ ଆସିସେ
ବିଚାର ତା ଅଦଭୁତ,
ସବୁ ଗର୍ବ ଦମ୍ଭ କଳ୍ପନା ଜଳ୍ପନା
ନିମିଷକେ କରେ ନଷ୍ଟ ।୮।

କ୍ଷମତା ପିପାସୁ ଭାଇ ଭଉଣୀଙ୍କୁ
ତେଣୁ ଏହି ନିବେଦନ,
ଭୁଲ ପଛେ ନୀତି ଭୁଲ ନାହିଁ 'କାଳ'
ରହ ସଦା ସଚେତନ ।୯।
'କାଳ'ର ଚେତନା ଜନ୍ମାଏ ବିରାଗ
ସାଂସାରିକ ସ୍ଥିତି ପ୍ରତି
ପରୋକ୍ଷରେ ତାହା ହୁଏ ସହାୟକ
ଏଡ଼ାଇବାରେ ଅନୀତି ।୧୦।

# ।। ପୁତ୍ର ସ୍ନେହ ।।

ଟିଭି ପରଦାରେ ମହାଭାରତ,
ଦେଖି ଶୁଣି କେ ନୁହେଁ ପୁଲକିତ,
ପୁରାଣ ନ ପଢ଼ି ପୁରାଣ କଥା,
ଶିଖି ହେଲେ ସରବେ ସମରଥା,
କାହାଣୀ ବିଷୟ,
ଆଲୋଚନାରେ ହୁଅନ୍ତି ତନ୍ମୟ ।୧।

କୃଷ୍ଣ ଚରିତକୁ କିଏ ପ୍ରଶଂସେ,
ଶକୁନି ଢଙ୍ଗରେ କିଏ ବା ହସେ,
ଅନ୍ଧ ଧୃତରାଷ୍ଟ୍ର ଅନୀତି କଲା,
ଦୁର୍ଯ୍ୟୋଧନକୁ ବିପଥେ ଠେଲିଲା,
ଭୀଷ୍ମ ପିତାମହ,
ବିରୋଧ୍ କିପାଇଁ ନ କଲେ କୁହ ।୨।

ବିଦୂର, ସଞ୍ଜୟ ଧର୍ମରେ ମତି,
ରଖି ସଦା ନ୍ୟାୟ କହିଲେ ଚେତି,
ପୁତ୍ର ସ୍ନେହ ଭୁଲି ଗାନ୍ଧାରୀ ରାଣୀ,
ଶୁଭ ପରାମର୍ଶ ଦେଲେ ବଖାଣି,
ପୁତ୍ର ସ୍ନେହେ ଅନ୍ଧ,
ହୋଇ ରାଜା ସବୁ କଲେ ବାସନ୍ଦ ।୩

ଭାଇ ବିବାଦକୁ ଏଡ଼ିବା ପାଇଁ,
ରାଜ୍ୟକୁ ଦିଭାଗ କଲେ ଗୋସାଇଁ,
ତଥାପି ନୋହିଲା ଶାନ୍ତି ସ୍ଥାପନ,
ନୂତନ ଫନ୍ଦିର କଲେ ସନ୍ଧାନ,
ଯୁଧିଷ୍ଠିରଙ୍କର,
ପଶାଖେଳ ପ୍ରୀତି ହୋଇଲା କାଳ ।୪।

ଶକୁନି ସହିତ ପଶାଖେଳରେ,
ଯୁଧିଷ୍ଠି ମଜିଲେ ହରଷଭରେ,
ରାଜ୍ୟ, ଧନ, ସ୍ତିରୀ କରିଲେ ପଣ,
ହାରିଲେ ହାରିବେ ଏସବୁ ଧନ,
ଶକୁନି କୌଶଳ,
ଭେଦି ନକାରିଲେ ବିଷମ ଫଳ ।୫।

ଖେଳରେ ହାରିଲେ ଯୁଧିଷ୍ଠି ରାଜା,
ସବୁ ଧନ ହାରି ହେଲେ ପରଜା,
ଦ୍ରୌପଦୀଙ୍କୁ ନେଇ କୁରୁସଭାରେ,
ଉଲଗ୍ନ କରିଲେ କୁରୁ ପାମରେ,
ଦୁର୍ଯ୍ୟୋଧନ ଡରେ,
ନୀରବ ରହିଲେ ସମସ୍ତ ବୀରେ ।୬।

ଦ୍ରୌପଦୀ ଛାଡ଼ିଲା ସକଳ ଆଶା,
କୃଷ୍ଣ ଭଗବାନେ କଲା ଭରସା,
ମାୟା ବିକାଶିଲେ ଶ୍ରୀପୀତବାସ,
ଦ୍ରୌପଦୀ ଦେହରେ ଅଶେଷ ବାସ,
ଯେତେ ଟାଣେ ଦୁଃଶା,
ବସନ ନସରେ ହେଲା ହତାଶା ।୭।

କୁନ୍ତିଙ୍କୁ ଛାଡ଼ିଣ ବିଦୂର ଘରେ,
ପଞ୍ଚଭାଇ ଗଲେ ବନ ବାସରେ,
ଦୀର୍ଘ ବାରବର୍ଷ ବନେ କାଟିଲେ,
ଗୋଟିଏ ବରଷ ଅଜ୍ଞାତ ହେଲେ,
ବିରାଟ ରାଜନ,
ପାଖେ ଛଦ୍ମ ନାମେ କାଟିଲେ ଦିନ ।୮।

ବନବାସ ଶେଷେ ହସ୍ତିନା ପୁରେ,
ପାଣ୍ଡବେ ଫେରିଲେ ହରଷ ଭରେ,
ମାତ୍ର ଦୁର୍ଯ୍ୟୋଧନ ଅନୀତି ବାଟ,
ଧରି ରାଜ୍ୟ ତାଙ୍କୁ ନଦେଲା ବାଣ୍ଟ,
ଯୁଦ୍ଧ ବିନା ମହୀ,
ଇଞ୍ଚେ ବି ଦେବିନି କହିଲା ସେହି ।୯।

ଯୁଦ୍ଧରେ ମାତିଲେ କୁରୁ ପାଣ୍ଡବେ,
ସଖା ସହୋଦର ମିଳି ସରବେ,
ଏକାକୀ ମାଧବ ଅମିତ ବଳ,
ପାଣ୍ଡବ ପକ୍ଷରେ ହେଲେ ସାମିଲ,
ଆଉ କି ସଂଶୟ,
ରହିଲା କାହାର ହେବ ବିଜୟ ।୧୦।

ଧର୍ମ ରୂପୀ କୃଷ୍ଣ ଧର୍ମ ରକ୍ଷଣ,
ନିମିତ୍ତ ସୃଜିଲେ ଧରମ ରଣ,
ନାନା ଉପଚାର କଲେ ପ୍ରସ୍ତୁତ,
ଭୀମ ଅର୍ଜ୍ଜୁନଙ୍କୁ କଲେ ନିମିତ୍ତ,
ଭୀଷ୍ମ, ଦ୍ରୋଣ, କର୍ଣ୍ଣ,
ଦୁର୍ଯ୍ୟୋଧନ ଆଦି କଲେ ନିଧନ ।୧୧।

ଗଛଟି ସମାନ ସିନା ସଭିଙ୍କୁ,
କାହା ମନ ଘେନେ କେଉଁ ରୀତିକୁ,
ବଂଶନାଶ ହେଉ ଯାଉ ସଂପଦ,
ପୁତ୍ର ଇଚ୍ଛାରେ ମୋ ନରହୁ ବାଦ,
ଧୃତରାଷ୍ଟ୍ର ଭାଷା,
ସବୁରି ମନରେ ବାନ୍ଧିଛି ବସା ।୧୨।

ପରସ୍ପରେ କୁହାକୁହି ହୁଅନ୍ତି
ଅନ୍ଧଟାର ପୁଣି ଏଡ଼େ ଆସକ୍ତି ?
ତଥାପି ସେ କିମ୍ବା ହେବ ନିନ୍ଦିତ,
କିଏ ଧୃତରାଷ୍ଟ୍ର ନୁହେଁ କୁହତ,
ଯେଡ଼େ ଅବିଗୁଣ,
ହେଲେ ପୁତ୍ର ସ୍ନେହ ନୁହେଁ ନିଉନ ।୧୩।

ହାତରେ ଗଢ଼ିଛୁ ଯତନ କରି,
ଆଖିରେ ଦେଖୁଛୁ ତା ରୂପଶିରୀ,
ତାକୁ ଘେନି ଆମ ସୁଖ ସ୍ୱପନ,
କିଏ ବିଚାରିବ ତା ଦୋଷଗୁଣ ?
ଏହା କି ସହଜ,
ପୁଅ କଥାରେ କେ ହେବ ନାରାଜ ।୧୪।

ଘଟଣା ବହୁଳ ମହାଭାରତ,
ଉଣା ଅଧିକରେ ସଭିଙ୍କୁ ଜ୍ଞାତ,
ତନ୍ମଧ୍ୟରୁ ବାଛି ଏହି ଗୋଟିକ,
ମନରେ ଛାପିଲେ ବିଜ୍ଞ ଜନକ,
ଧୃତରାଷ୍ଟ୍ରଠାରୁ,
ନିଉନ ଯେପରି କେହି ନକରୁ ।୧୫।

## ।। ଆକର୍ଷଣ ।।

ସୂରୁଯ ଉଇଁଲେ ବିକଶେ ରାଜୀବ
କୁମୁଦ ଚନ୍ଦ୍ରକୁ ଦେଖି,
ସୂର୍ଯ୍ୟଙ୍କୁ ଅନାଇଁ ବିତାଏ ଦିବସ
କାହିଁକି ସୂରୁଯମୁଖୀ ?

କାହିଁକି ସାଗରେ ଉଠଇ ତରଙ୍ଗ
ପୂର୍ଣ୍ଣଚନ୍ଦ୍ର ଦେଖି ନଭେ,
କାହିଁକି ଚୁମ୍ବକ ସମୀପରେ ଲୌହ
ସ୍ୱତନ୍ତ୍ର ରହେନି କେବେ ?

କାମୁକ ଚାଟୁରେ ବିଭୋର ହୁଅଇ
କାହିଁକି ବିଟପୀ ନାରୀ,
ଲୋଭୀ ନର କିମ୍ପା ଧନ ଲାଭ ପାଇଁ
ଭୁଲଇ ସବୁ ଚାତୁରୀ ?

ବୃଦ୍ଧ ଅବା ଯୁବା ପୁରୁଷ ସମୀପ
ହୋଇଲେ ଯୁବତୀ ନାରୀ,
କାହିଁକି ପୁରୁଷ ଲୋଭିଲା ଆଖିରେ
ନିରେଖେ ତା ରୂପ ଶିରୀ ?

ଆକାଶେ ନିକ୍ଷିପ୍ତ ପଦାର୍ଥ କିମ୍ପାଇ
ଭୂପୃଷ୍ଠକୁ ଫେରିଆସେ,
ଭଲ ଛାତ୍ରଟିଏ ଗୁରୁଙ୍କର ଶ୍ରଦ୍ଧା
କିମ୍ପାଇଁ ଲଭେ ଅକ୍ଳେଶେ ?

ଛୁଆକୁ ଦେଖିଲେ ମାଆର ସ୍ତନରୁ
କାହିଁକି ଝରଇ କ୍ଷୀର,
ବିପରୀତ ଲିଙ୍ଗୀ ମଧ୍ୟରେ କାହିଁକି
ଅଧିକ ସ୍ନେହ ଆଦର ?

ଅତି ଭୟାତୁରା କୋମଳାଙ୍ଗୀ ନାରୀ
କିମ୍ବା ଅଭିସାର କାଳେ,
ହୁଏ ସାହସିନୀ ସମସ୍ତ ବାଧକ
ଅତିକ୍ରମେ ଅବହେଳେ ।

ଆକାଶରେ କଳା ବାଦଲ ଢାଙ୍କିଲେ
ପର୍ବତ ଶିଖରେ କେକୀ,
କାହିଁକି ଆନନ୍ଦେ ବିଭୋର ହୋଇଣ
ନୃତ୍ୟ କରେ ପୁଚ୍ଛ ଟେକି ?

ଅନଳ ଶିଖାରେ ପଶିଣ ପତଙ୍ଗ
କାହିଁକି ଜୀବନ ହାରେ,
ଅନଳେ ପଶିଲେ ପୋଡ଼ି ଜଳିଯିବା
କଥା କି ଅଜଣା ତା'ରେ ?

ଏସବୁର ମୂଳେ ଗୋଟିଏ ଜିନିଷ
ଆକର୍ଷଣ ତା'ର କାର୍ଯ୍ୟ,
ପ୍ରାକୃତିକ ଅବା କୃତ୍ରିମ ଯା'ହେଉ
ଅଟଇ ଅପରିହାର୍ଯ୍ୟ ।

# ॥ ଧୂମପାୟୀର ଅନୁଚିନ୍ତା ॥

ଶୁଷ୍କ କେନ୍ଦୁପତ୍ର ଅଙ୍ଗ ଆଚ୍ଛାଦନ କରି ରେ
ଅନ୍ତରେ ତମାଖୁ ଭରି ବୋଲାଉଛୁ ବିଡ଼ି ରେ
ବନ୍ଧୁରେ, ମହୀରେ ଆଉ କେ ଅଛି ତୋ ସରି ରେ
ତୋହ ବିନା ଦଣ୍ଡେ ପ୍ରାଣ ନ ହୁଅଇ ଧରି ରେ ।୧।

ନାତି ଦୀର୍ଘ କ୍ଷୀଣ ଅଟେ ଶରୀରଟି ତୋର ରେ,
ମାତ୍ର ପାଞ୍ଚ ପଇସାରେ ହେଉ ଆପଣାର ରେ,
ବନ୍ଧୁରେ, ଗରିବ ଖଟିଖିଆ ଜନତାର ରେ
ଭୋକଶୋଷ ନିବାରଣ କରୁ ତୁ ସତ୍ୱର ରେ ।୨।

ଅଗ୍ନିରେ ଜଳାଇ ଦେହ ମୁଖେ ଧୂମ ଦେଉ ରେ,
ଭୋଗୀ ବିନା ଅନ୍ୟ କେ ବୁଝିବ ଧୂମଭାଉ ରେ,
ବନ୍ଧୁରେ, ତୋ ସମ ଉପକାରୀ ନାହିଁ ଆଉ ରେ
ଆପେ ଜଳି ବିନା ପ୍ରତିଦାନେ ସୁଖ ଦେଉ ରେ ।୩।

କେନ୍ଦୁପତ୍ର ତମାଖୁର ଉତ୍ପାଦନକାରୀ ରେ
ସୁଖୀ ହୋଇଥାନ୍ତି ଧନ ରୋଜଗାର କରି ରେ,
ବନ୍ଧୁରେ, ହୁଅନ୍ତି ସୁଖୀ ତୋ ନିର୍ମାଣ-କାରୀ ରେ,
ତୋ ଦେଇ ବେପାର ଚାଲେ ଦେଶଗ୍ରାମ ଭରି ରେ ।୪।

ଏତେଗୁଣ ସତ୍ତ୍ୱେ ତୋର ନିନ୍ଦୁକ କି ଊଣା ରେ,
ରୋଗ କାଳେ ଘୋଟିଯାଏ ତୋର ଧୂମ ଟଣା ରେ,
ବନ୍ଧୁରେ, ଭକତେ ତୋର ହୋଇଥାନ୍ତି ବଣା ରେ,
ଛାଡ଼େ ପୁଣି ଟାଣେ କିଛି ରହେନି ଠିକଣା ରେ ।୫।

ଛାଡ଼ି ମୁଁ ନପାରେ ତୋତେ ଯିଏ ଯାହା କହୁ ରେ,
ନିଃସଙ୍ଗ ଜୀବନେ ମୋର ଭରସାତୁ ଦେଉ ରେ,
ବନ୍ଧୁରେ, ତୋ ସାଥେ ମୋର ଭାବ ସଦା ଥାଉ ରେ
ଦଶବାର ଥର ଦିନ ମଧ୍ୟେ ଭେଟ ହେଉ ରେ ।୬।

# ॥ ମୁଁ ରଖିଛି ଦାଢ଼ି ॥

ଯୁଆଡ଼େ ଯାଏ ମୁଁ ଯାହାକୁ ଭେଟଇ
ଶୁଣଇ ବିଭବ ଗୀତି,
କିଏ ରଖିଅଛି ସୁନା ଭରି ଭରି
କିଏ ବା ରଖିଛି ଗାଡ଼ି।

କିଏ ରଖିଅଛି ଜମି ବାଟି ବାଟି
କିଏ ବା ରଖିଛି ଟଙ୍କା,
କିଏ ବା ତୋଳିଛି ନଗରେ ନଗରେ
ଶୋଭନୀୟ ଅଟ୍ଟାଳିକା।

କିଛି ତ ରଖିନି ହୀନ ମାନବ ମୁଁ
ଅଟେ କି ସଂସାର ଛଡ଼ା,
ଛୋଟ ବଡ଼ କିଛି ରଖିଛନ୍ତି ସର୍ବେ
ମୁଁ କିମ୍ବା ଏଡ଼େ ଉଗ୍ଣୁଡ଼ା ?

ସତେ କ'ଣ ପ୍ରଭୁ ଦେଇ କି ନାହାନ୍ତି
ମୋତେ କୌଣସି ପଦାର୍ଥ,
ଯାହାକୁ ରଖି ମୁଁ କହନ୍ତି ବନ୍ଧୁରେ
ଦେଖ ମୁହିଁ ବି ସମର୍ଥ।

ଭାବନାର ଭାବ ଜାଗିଲା ମନରେ
ଦେଇଛନ୍ତି ପ୍ରଭୁ ଦାଢ଼ି,
ନରଖି ତାହାକୁ ବାରିକ ଦୁଆରେ
କିମ୍ପାଇ ଦିଏ ମୁଁ ତଡ଼ି ?

ରଖିଲି ଦାଢ଼ି ମୁଁ ମୁହଁରେ ଏପାଇଁ
କହିବି ବନ୍ଧୁଙ୍କ ମେଳେ,
ତୁମେ ଯେଉଁପରି ରଖିଅଛ ଧନ
ମୁଁ ରଖିଛି ଦାଢ଼ି ହେଳେ।

ତୁମ ଧନ ସଙ୍ଗେ ନୁହେଁ ତା ସମାନ
ନୁହେଁ ସେପାଇଁ ଭାବିତ,
'ରଖିବା' କ୍ରିୟାରେ ଅନ୍ତତଃ ସମାନ
ନହେବି କିମ୍ବା କୁହ ତ ?

ତୁମେ ମଲାପରେ ତୁମର ସମ୍ପତ୍ତି
ଗାଇବ ତୁମର କୀର୍ତ୍ତି,
ମାତ୍ର ମୋର ଦାଢ଼ି ମୋ ମରଣ ସଙ୍ଗେ
ଲଭିବ ପରିସମାପ୍ତି।

କେତେ କେତେ ଭେଦ ରହିଛି ଜଗତେ
ତହିଁରୁ ଗୋଟିଏ ଇଏ,
ରଖିବା କ୍ରିୟାରେ ହେବି ସିନା ସମ
ରଖା ପଦାର୍ଥରେ ନୁହେଁ।

କହିବେନି ଆଉ ରଖିନାହିଁ କିଛି
ଦେଖିବେ ରଖିଛି ଦାଢ଼ି,
ଭିନ୍ନତା ଭିତରେ ସମତା ରହିବ
ଯିବିନି ମୁଁ ତଳେ ପଡ଼ି।

## ।। ଉଦ୍ଧାରକ ।।

ଶୁଭଦିନ ଦେଖି ହେଲେ ବାହାର
ଗାଁଆରେ ଯାଇ ହୋଇଲେ ହାଜର
ବାପା ଗୋଡ଼ତଳେ ପୁଅକୁ ଥୋଇ
ଉଭୟ ପଡ଼ିଲେ ପ୍ରଲମ୍ବ ହୋଇ
ପିଲାଟିକୁ ଦେଖି ବାପା
କହିଲେ ଏ କିଏ, ଏଠାରେ କିମ୍ପା ?

ସବିନୟେ କରି ଦେଲା ଉତ୍ତର
ଦମ୍ଭରେ କହିଲା, ପୁଅ ମୋହର,
ଦୋଷତ୍ରୁଟି ଥିଲେ ମାର୍ଜନା କର
ଅସହ୍ୟ ହେଲାଣି ଦୁଃଖର ଭାର
ବାସନ୍ଦ ଯନ୍ତ୍ରଣା ଯାଉ
ମୋ ପାଇଁ ଝିଅଟି ଦଣ୍ଡ ନପାଉ ।

ହସ ହସ ହୋଇ ନାତିକୁ କୋଳ
କରି ବାପା ହେଲେ ଆନନ୍ଦେ ଭୋଳ
ଆଦେଶ ଦେଲେ ଡକାଇ ପତ୍ନୀଙ୍କୁ
ଘରକୁ ନେବାକୁ ପୁଅ ବୋହୂଙ୍କୁ
ବନ୍ଦାଇଲେ ମା' ତାଙ୍କୁ
ପ୍ରଣାମାନ୍ତେ ଦୁହେଁ ଗଲେ ଘରକୁ ।

ମାଆ ଆସି କୋଳ କଲେ ନାତିକୁ
ନାଁ ଦେବା କଥା ଆସେ ମନକୁ
ନାତିର ନାମ ଦେବେ ସେମାନେ

ଉଭୟ ଖୋଜିଲେ ନାଁ ମନେ ମନେ
ଉଦ୍ଧାରକ, ଉଦ୍ଧାରକ
ଉଚ୍ଚାରିଲେ ଢେଙ୍କେ ହୋଇ ଉତ୍ସୁକ।

ଇଏ କି ନାଁ-କହି ହସିଲେ ମାଆ
ଭଲ ନାଁଟିଏ ଦେଉନ କିଆଁ ?
ଉଧାର କରଜ କରିବ ବୋଲି
ଜ୍ୟୋତିଷ ପରାଏ ମାରୁଛ ଗୁଲି
ଦେଉଛି ମୁଁ ଭଲ ନାଆଁ
ନରିଆ ପୁଅ ସେ ହେଉ ହରିଆ।

ମୂରୁଖ ହେଲେ ସରିଲା କଥା
ଶବ୍ଦ ପାର୍ଥକ୍ୟ ହୁଅଇ ବୃଥା।
ଉଦ୍ଧାର ଶବ୍ଦକୁ ବୁଝି ଉଧାର
ଅପସନ୍ଦ କରି କର ଚିତ୍କାର
ଦେଉଛି ମୁଁ ଠିକ୍ ନାମ
ଉଦ୍ଧାରକ କରେ ଉଦ୍ଧାର କାମ।

ଜାଣୁନା, ସେ ଦୁହେଁ ବାସନ୍ଦ ହୋଇ
ଜ୍ଞାତି, ପରିବାର, ବନ୍ଧୁ ହରାଇ
ଦୁଃଖରେ ବିଦେଶେ ଥିଲେ ଏକଲା
ଏଇ ଶିଶୁ ତାଙ୍କ ଦୁଃଖ ଫେଡ଼ିଲା
ଉଦ୍ଧରିଲା ବାପା ମାଆ
ସେ ପାଇଁ ଉଦ୍ଧାରକ ଦେଲି ନାଆଁ।

ଅପେକ୍ଷା ନକରି ପତ୍ନୀ ସ୍ୱୀକୃତି
ଗୃହ-ସଦସ୍ୟଙ୍କୁ ଡାକିଲେ କତି
ନାତିର ନାମ ଘୋଷଣା କଲେ
ଭୋଜିଭାତ କର ବୋଲି କହିଲେ
ପୁଅ ବୋହୂ ମୁଣ୍ଡେ ହାତ
ରଖି ଆଶୀର୍ବାଦ କରିଲେ ତାତ।

## ।। ସଦ୍‌ଭାବନା ।।

(ନିଜେ ଭଲ ହେବା ସଙ୍ଗେ ଅନ୍ୟମାନେ ଯେପରି
ଭଲ ହେବେ-ଏହି ଭାବ ରଖି କାମ କଲେ
ସମାଜ ଦୁଃଖମୁକ୍ତ ହେବ।)

ନ କରିବି ମୁହିଁ ଅନ୍ୟାୟ
ପଛେ ଯାଉ ଜୀବନ,
ତୁଚ୍ଛ ଲାଭ ପାଇଁ ମିଥ୍ୟାରେ
କେବେ ନ ଦେବି ମନ ।୧।

ଆଘାତ କେ ଦେଲେ ସହିବି
ରୋଷ କରିବି ନାହିଁ,
ବଳେ ମନ ତାର ବୁଝିବ
ଦ୍ୱେଷ ଯିବ ପଳାଇ ।୨।

ଗୁରୁଜନେ ଭକ୍ତି କରିବି
ଲଘୁଜନରେ ସ୍ନେହ,
ସ୍ନେହ ଭକ୍ତି ଦାନେ ହୁଏକି
ମନ ସଂପଦ କ୍ଷୟ ।୩।

ସତ୍‌କର୍ମେ ପ୍ରବୃତ୍ତ ହୋଇବି
ତେଜି ମନରୁ ଭୟ,
ଅଧର୍ମୀ ଅଜ୍ଞାନୀ ଲୋକଟି
ସିନା ଡ଼ରେ ଅଥୟ ।୪।

## ।। ଗଛ ।।

(ଜୀବନ ଧାରଣ ପାଇଁ ଗଛର ଭୂମିକା ହୃଦୟଙ୍ଗମ କରି ତାହାର ସୁରକ୍ଷା ପାଇଁ ଧ୍ୟାନ ଦେବା ସମସ୍ତଙ୍କର କର୍ତ୍ତବ୍ୟ)

ମାଟି ଉପରେ ଠିଆ ହୋଇ
ଗଛ ଧରେ କାୟ,
ଖରା, ବର୍ଷା, ପବନକୁ
ନ ଥାଏ ତାର ଭୟ ।୧।

ଫଳ, ଛାୟା ଦାନ କରିଣ
ତୋଷେ ଜନ ମନ,
ଲୋଡେ ନାହିଁ ସେଥିପାଇଁ ସେ
କେବେ ପ୍ରତିଦାନ ।୨।

ଅଙ୍ଗ ଛେଦ ଅବା ହୋଇଲେ
ପୂରା ଭୂମିଶାୟୀ,
ଗଛ ନାମ ଲୋପ ହୁଏ
କାଠ ତାହାକୁ କହି ।୩।

ନାନା କାମରେ ଲାଗଇ କାଠ
ଅତି ଆବଶ୍ୟକ,
ଦିନୁ ଦିନୁ ଚାହିଦା ତାର
ହୁଅଇ ବ୍ୟାପକ ।୪।

ଏତିକିରେ ଗଛର କାମ
ନୁହଁଇ ସୀମିତ,
ଆହୁରି କେତେ କାମ ତାର
ଅଟଇ ଗୁପତ ।୫।

ବିଜ୍ଞାନୀଏ ବୁଝନ୍ତି ତାହା
ଆମକୁ ଅଜଣା,
କାଠ, ଫଳ, ଛାୟା ମାତ୍ର
କରୁ ଆମେ ଗଣନା ।୬।

ଫଳ, ଛାୟା ମୂଲ୍ୟ ବା କେତେ
ହାଣି କାଠ ପାଇଁ,
ଗଛ ଶୂନ୍ୟ ଧରାକୁ କରୁ
ବେପରୁଆ ହୋଇ ।୭।

ବିଜ୍ଞାନୀଙ୍କର ବାର୍ତ୍ତା ଆମେ
ନ ଘେନୁ ମନରେ,
ଗଛ କାଟି ନିଜର କ୍ଷତି
କରୁ ପରୋକ୍ଷରେ ।୮।

ନିଶ୍ୱାସରେ ଛାଡୁ ଯାହା
ଅଙ୍ଗାରକାମ୍ଳ କହି,
ଦୂଷିତ ତାହା, ଗଛ ତାହାକୁ
ଶୋଷିଣ ଥାଇ ।୯।

ଅମ୍ଳଜାନ ବିତରଣ
କରଇ ତାହା ସ୍ଥାନେ,
ପ୍ରଶ୍ୱାସରେ ନେଉ ତାହାକୁ
ଜୀବନ ରକ୍ଷଣେ ।୧୦।

ଗଛ ନ ଥିଲେ ଅମ୍ଳଜାନ
କାହୁଁବା ମିଳିବ,
ଅଙ୍ଗାରକାମ୍ଳ ଦୂଷିତ
ବାୟୁ କିଏ ଶୁଦ୍ଧିବ ।୧୧।

ଜଳ ଅଟେ ଜୀବନ
ଗଛ ତାହାର ଧାରକ,
ଗଛ ନଥିଲେ ଜଳ
ପାଇବା କଷ୍ଟକାରକ ।୧୨।

ବରଷା ଧାରା ଯେତେ
ପଡ଼ଇ ଗଛ ଦେହରେ,
ତାହାକୁ ସିଏ ସାଇତି
ରଖେ ମାଟି ତଳରେ ।୧୩।

ଗଛ ନ ଥିଲେ ବରଷା
ଜଳ ଯାଆନ୍ତା ବୋହି,
ଭୂପୃଷ୍ଠର ମୃତ୍ତିକା ଯିବ
ତା ସଙ୍ଗରେ ଧୋଇ ।୧୪।

ଭୂତଳର ଜଳ ଧାରର
କ୍ଷୟର ପୂରଣ,
ନହୋଇ ପାରି କ୍ରମେ ତାହା
ହୋଇଯିବ ଶୂନ ।୧୫।

ମୃତ୍ତିକାକ୍ଷୟ ହେତୁ
ଟାଙ୍ଗର ହୋଇବ ଭୂଇଁ,
ରୁକ୍ଷ ହୋଇବ ଧରାପୃଷ୍ଠ
ଶସ୍ୟ ନ ଉପୁଜଇ ।୧୬।

ବହୁ ଗଛ ଯହିଁ ଥାଇ
ବଣ ଜଙ୍ଗଲ କହି,
ବରଷା ଜଳ ଅନାୟାସେ
ଭୂତଳକୁ ଯାଇ ।୧୭।

ଭୂତଳର ଜଳଧାର
ସଂରକ୍ଷିତ ରହେ,
ଗଛ ଶୂନ୍ୟ ସ୍ଥାନେ ଏହା
ସମ୍ଭବି ନ ଥାଏ ।୧୮।

ସହଜ ଲଭ୍ୟ ଜଳ ସେଠି
ମାଟି ଖୋଳି ପାଉଁ,
ଟାଙ୍ଗର ଭୂଇଁ ତଳେ
ଜଳ ମିଳିବ ବା କାହୁଁ ? ।୧୯।

ଜଳ ଶୂନ୍ୟ ଶସ୍ୟହୀନ
ହୋଇବ ଯେବେ ଧରା,
କି ଉପାୟେ ବଞ୍ଚିବ ପ୍ରାଣୀ
ଭବ ଟିକେ ପରା ।୨୦।

ଜଙ୍ଗଲ ନାଶି ଶିଳ୍ପ ଗଢ଼ି
ଲଭୁ ପରିତୋଷ,
ପରିଣାମେ କରିବ ତାହା
ମାନବକୁ ଧ୍ୱଂସ ।୨୧।

ଗଛ ଏତେ ଉପକାରୀ
ଆମ ଜୀବନ ସାଥୀ,
ତା'ର ସୁରକ୍ଷା ପାଇଁ
ଆମେ ଦେବାନି କି ମତି ? ।୨୨।

ନିଜର ଅହିତ ପୁଣି
ସମାଜର କ୍ଷତି,
କରଇ ଯେଉଁ କାମ ତାହା
ପାପରେ ଗଣତି ।୨୩।

ଗଛ କଟା କାମଟିକୁ
ପାପ ବୋଲି ଜାଣ,
ପାପ କରିବାକୁ କେବେ
ବଳାଅନି ମନ ।୨୪।

# ।। ସ୍ତ୍ରୀ ।।

(ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ ମନର ସମ୍ବନ୍ଧ । ବାହାର କାମଦାମର ପ୍ରଭାବ ନଗଣ୍ୟ ।)

ସ୍ତ୍ରୀ କି ଅଟଇ ଘର ଜଗୁଆଳୀ
ସନ୍ତାନ ମାନଙ୍କ ଧାଈ,
ଚୁକ୍ତି-ବଦ୍ଧ କି ସେ ଭାତ ଜଳଖିଆ
ରାନ୍ଧି ପରସିବା ପାଇଁ ? ।୧।

ସ୍ୱାମୀ ରୋଜଗାର ହିସାବ ରଖିବା
ଅଟଇ କି ତାର କାମ,
ବନ୍ଧୁ ବାନ୍ଧବଙ୍କ ଚରଚା ପାଇଁ ସେ
କିମ୍ପାଇଁ କରିବ ଶ୍ରମ ? ।୨।

ସ୍ୱାମୀ ଗସ୍ତକ୍ରମ ଖିଆଲ କରିବା
ଅଟଇ କି କାମ ତାର,
ଦାୟିତ୍ୱ କି ତାର ସ୍ୱାମୀ ଲୁଗାପଟା
ସାଇତି ସମ୍ପାଦିବାର ? ।୩।

ରୋଗ ବେଳେ ସ୍ୱାମୀ ସେବା କରିବା କି
ଅଟଇ ତାହାର କାମ,
ସେବିକା ଚାକିରି କରିଛି କି ସିଏ
ସ୍ୱାମୀ ଘରେ ଦେବ ଶ୍ରମ ? ।୪।

ସ୍ୱାମୀର ହୁକୁମ ତାଲିମ୍ କରିବା
କିମ୍ବା ହେବ କାମ ତାର,
ନଉକରି ସିଏ କରିବା ପାଇଁ କି
ଆସିଛି ସ୍ୱାମୀର ଘର ? ।୫।

ଯେତେ ଯେତେ କାମ ବରାଦ ତାହାକୁ
ହୋଇଛି କି ସର୍ତ୍ତ ଲେଖା,
ପାଳନ ନ କଲେ ଅବା ହେଳା କଲେ
ସ୍ତ୍ରୀ ପଣେ ଲାଗିବ ଶଙ୍କା ? ।୬।

ଅଥବା ଭଲରେ ସମ୍ପାଦନ କଲେ
ସୁଯୋଗ୍ୟ ସ୍ତ୍ରୀ କି ହୋଇବ,
ଅନାବିଳ ପ୍ରେମ ବିକାଶ ଲଭିବ
ସୁଖ ଶାନ୍ତି ବିରାଜିବ ? ।୭।

ବାସ୍ତବ ଅବସ୍ଥା ନୁହେଁତ ଏପରି
ଯାହା ଆମକୁ ଦିଶଇ,
ସବୁ କାମ ଦାମ ଭଲରେ ହେଲେ ବି
ସୁଖ ଶାନ୍ତି ନମିଳଇ ।୮।

ବରଂ ଦେଖାଯାଏ ଅନିପୁଣ ଘରେ
ସରାଗ ସେନେହ ଭରା,
କିପରି ହୁଏ ତା ଉତ୍ସଟି କେଉଁଠି
ଧରା ନପଡ଼ଇ ପରା ।୯।

ଯାହା କରେ ସ୍ତ୍ରୀରୀ କର୍ତ୍ତବ୍ୟ ଭାବିଣ
ଅବା ସ୍ନେହ-ବଶ ହୋଇ,
ପୁରସ୍କାର ନୁହେଁ ଲୋଡା ତାହା ପାଇଁ
ଭାବଟିକେ ମନ ଦେଇ ।୧୦।

କର୍ମରେ ନିପୁଣ ଅଥବା ବିଗୁଣ
ନୁହଁଇ ତ ବଡ଼ କଥା,
ଅନ୍ତରର ସ୍ନେହ ଲୁକ୍କାୟିତ କରେ
ସବୁ କର୍ମ ମଳିନତା ।୧୧।

ପରସ୍ପରେ ସ୍ନେହ ଅନ୍ତରରେ ଯଦି
ବିରାଜମାନ ହୁଅଇ,
ସ୍ନେହବଶ ହୋଇ ତ୍ରୁଟି କେ କାହାର
କେବେ ଦେଖି ନ ପାରଇ ।୧୨।

ସ୍ନେହାସନ ପାତି ସ୍ୱାମୀର ମନରେ
ନ ହୋଇଥିଲେ ଆସୀନ,
ବାହାର କରଣୀ ହେଲେ ହେଁ ନିପୁଣ
ହୁଏ ସିନା ଅକାରଣ ।୧୩।

ସ୍ୱାମୀ ସ୍ତ୍ରୀ ସଂପର୍କ ବାହାର କର୍ମରେ
ନୁହଁଇ ପର୍ଯ୍ୟବସିତ,
ମନର ମିଳନ ଅନ୍ୟ ନାମ ଯାର
ବୁଝ ଭଲେ ଦେଇ ଚିତ୍ତ ।୧୪।

ଉଭୟ ମନର ଭାବ ଅଭାବର
ଚିତ୍ର ଯେବେ ଉଭୟରେ,
ନୁହଁଇ ଫଳିତ ନୁହେଁ ଏକମନ
କି ମୂଲ୍ୟ ବାହ୍ୟ କର୍ମରେ ? ।୧୫।

କାମ ପାଇଁ କଣ ଲୋଡା ହୁଏ ସ୍ତିରୀ
ଚାକର କି ଅପାରଗ,
ଚାକର ବାକର ଅଭାବ ନଥିଲେ
ସ୍ତିରୀ କି ଅନୁପଯୋଗ ? ।୧୬।

ବାହ୍ୟ ସେବା ନୁହେଁ ମନ ସେବା ପାଇଁ
ସ୍ତିରୀ ପୁରୁଷ ସଂଯୋଗ,
ମନ ମିଳିଥିଲେ ବାହ୍ୟ ଅସୁବିଧା
ନାଶି ନ ପାରେ ସରାଗ ।୧୭।

ମନର ମିଳନ କିପରି ହୋଇବ
ଅଛି କି ନିର୍ଦ୍ଦିଷ୍ଟ ସୂତ୍ର,
ନିଜ ଅନୁଭୂତି ନିଜ ଅନୁଧ୍ୟାନ
ବଳେ ଏହା ସାଧ୍ୟ ମାତ୍ର ।୧୮।

ମନ ଜାଣି ମନ     କିଣିବା ପାଇଁ କି
ନ ହୋଇଲେ ଆଗତର,
ସ୍ତିରୀ ଅଧିକାର     ଲମ୍ବା କଥାକହି
ହେଉଥିବ ହରବର ।୧୯।

ପ୍ରକୃତି ପୁରୁଷ     ସଂଯୋଗେ ହୁଅଇ
ସୃଷ୍ଟି ପ୍ରକ୍ରିୟା ସାଧନ,
ସ୍ୱାମୀ ସ୍ତ୍ରୀ ସଂଯୋଗେହୁଏ ସେହିପରି
ସଂସାର କର୍ମ ତିଆଣ ।୨୦।

ପୁରୁଷ ଇଚ୍ଛାର     ଅନୁବର୍ତ୍ତୀ ହୋଇ
କରେ ପ୍ରକୃତି କରମ,
ଉଦାସୀନ ହୋଇ     ରହଇ ପୁରୁଷ
ଅଟେ ସଂପୂର୍ଣ୍ଣ ନିଷ୍କର୍ମ ।୨୧।

ସେ ପାଇଁ ପ୍ରକୃତି     ଲୋଡେ ନାହିଁ କେବେ
ପୁରୁଷଠୁ ଉଚ୍ଚାସନ,
ଅନୁଗତ ସଦା     ନିଜତ୍ୱ ବିହୀନ
ଭାବ ପୂର୍ଣ୍ଣ ସମର୍ପଣ ।୨୨।

ଆନୁଗତ୍ୟ ଅର୍ଥ     ନୁହଁଇ ଦାସତ୍ୱ
ଭ୍ରମଟି ସେଇଠି ହୁଏ,
ସମର୍ପିତ ହେଲେ     ଉପେକ୍ଷିତ ହେବା
କେବେ ସମ୍ଭବଟି ନୁହେଁ ।୨୩।

ସ୍ୱାମୀ ସ୍ତ୍ରୀ ସମସ୍ୟା     ରହିବନି କେବେ
ଏହି ଭାବ ଦୃଢ଼ ହେଲେ,
ସ୍ୱାମୀ ଇଚ୍ଛା ଯାହା     ସ୍ତିରୀ ଇଚ୍ଛା ତାହା
ପ୍ରତୀତି ଜାଗଇ ଭଲେ ।୨୪।

## ।। ମୃତ୍ୟୁଚିନ୍ତା ।।

(କେହି ନିଜେ ଦୁଃଖ ଯନ୍ତ୍ରଣା ଭୋଗ କରେ, ଅନ୍ୟକୁ ହନ୍ତସନ୍ତ କରି ମରେ। କେହି ନିଜେ କଷ୍ଟ ନ ଭୋଗି ଅନ୍ୟକୁ କଷ୍ଟ ନ ଦେଇ ହଠାତ୍ ପ୍ରାଣ ଛାଡେ। ଜଣେ ଦୁଃଖରେ ଓ ଆଉ ଜଣେ ସୁଖରେ ମରେ–ଏପରି କାହିଁକି ହୁଏ – ତାହା ମନୁଷ୍ୟର ଅଗୋଚର। କଷ୍ଟ ବେଳେ ସେବା ଯତ୍ନ ମିଳିବାରେ ଯାହାର ଅସୁବିଧା ହୁଏ (ବୃଦ୍ଧଙ୍କ ପରି) ତାହାର ଅବସ୍ଥା ଆହୁରି ଦୟନୀୟ।)

ଜୀବନର ଶେଷଭାଗେ ହୋଇ ଉପନୀତ,
ବସି ବୃଦ୍ଧ କରେ ଚିନ୍ତା ମୃତ୍ୟୁର ବୃତ୍ତାନ୍ତ,
କାହିଁ ପାଇଁ ଭଗବାନ,
ସନ୍ତାପିତ କର ନରେ ଖଞ୍ଜିଣ ମରଣ ।୧।

ଯେତେ ଦୁଃଖ ପଛେ ଦିଅ ଜୀବନଟି ଥାଉ,
ଜୀବନ ଗଲେ ବିଭବ ମିଳଇ କି ଆଉ,
କେହି ନ ଚାହେଁ ମରଣ,
ଖଞ୍ଜି ତାକୁ ଭୟାତୁର କର ଅକାରଣ ।୨।

କଷ୍ଟ କରି ଅରଜିଛି ଯେତକ ସଂପତ୍ତି,
ପୁଅ ଝିଅ ପରିଜନ କୁଟୁମ୍ବାଦି ଜ୍ଞାତି,
ଛାଡ଼ି ସବୁଦିନ ପାଇଁ,
ଚାଲିଯିବ ପୁଣି କେବେ ଭେଟ ହେବ ନାହିଁ ।୩।
ଦିନେ ଓଳିଏ କୁଆଡେ ଗଲେ ତାକୁ ଛାଡି,
ଅଥୟ ହୁଏ ପରାଣ ଗଲା କି ଉଳୁଡି,

ଫେରି ଗୋଟି ଗୋଟି କରି,
ଭଲମନ୍ଦ ନ ବୁଝିବା ଯାଏ ମୁଣ୍ଡ ଭାରି ।୪।

ମଣିଷର ମନକଥା ବୁଝନା କି ପ୍ରଭୁ,
ମରଣ ଖଞ୍ଜାଇ ତାକୁ କରୁଅଛ କାବୁ,
ଏଡେ ନିଷ୍ଠୁର କିମ୍ପାଇଁ,
ଦଣ୍ଡ ଦେବା ପାଇଁ କଣ ଅନ୍ୟ ବାଟ ନାହିଁ ? ।୫।

ନୀତି କି ନିୟମ କିଛି ନାହିଁ ପୁଣି ତାର
ବାଳବୃଦ୍ଧ ଯୁବା କିଛି କରେ ନା ବିଚାର,
ନାହିଁ ଦିନ କାଳ ତାର,
ଅଚାନକ ଆସି ପ୍ରାଣ କରଇ ସଂହାର ।୬।

ଧନୀ ମାନୀ ଦୁଃଖୀ ରଙ୍କି ରୋଗୀ ଅବା ସୁସ୍ଥ,
ପ୍ରତିପତ୍ତିଶାଳୀ ଅବା ଅତୀବ ଅଜ୍ଞାତ,
ଶୁଣେ ନାହିଁ କାର କଥା,
ଉପ୍ରୋଧ ନାହିଁ ତାହାର ନଥାଏ ମମତା ।୭।

ଦଣ୍ଡେ ଘଡ଼ିଏ ଅପେକ୍ଷା କରେ ନାହିଁ ସିଏ,
ଆସିବା ଅଗରୁ ମଧ୍ୟ ଖବର ନ ଦିଏ,
ବେଳ ନ ମିଳେ ପ୍ରାଣୀକୁ,
କହି ପୋଛି ଶେଷ ବେଳେ ବିଦାୟ ନେବାକୁ ।୮।

ଥାଅ ତୁମେ ପ୍ରାଣୀ ଦେହେ ଜୀବ ରୂପ ନେଇ,
ତୁମ ଅଂଶୀ ଜୀବର କି ମରଣ ହୁଅଇ,
ଖାଲି ମରଇ ଶରୀର,
ନୂତନ ଶରୀରେ ବାସ ହୁଏ ସେ ଜୀବର ।୯।

ନୂତନତା ପାଇଁ ଯଦି ମରଣ ଖଞ୍ଜିଲ,
ବାଛି କି ନିଅନ୍ତା ସିନା ପୁରୁଣା ଶରୀର,
ଅତି ଅବିବେକୀ ସିଏ,
ଖିଆଲି ପରାଏ ବୁଢ଼ା ଛାଡ଼ି ଯୁବା ନିଏ ।୧୦।
ବାପ ଆଗେ ପୁଅ ମରେ ଶିଶୁର ମରଣ,
ଅଳପ ବୟସେ କେତେ ଛାଡନ୍ତି ପରାଣ

ପ୍ରିୟ ବନ୍ଧୁ ପରିଜନ,
ଶୋକରେ ଅଧୀର ହୋଇ ଭୋଗନ୍ତି କଷଣ ।୧୧।

ନୂତନତା ନାମେ ଅବ୍ୟବସ୍ଥା ଦିଅ ମେଲି,
ଦୁଃଖେ ଆମେ ସଢୁ ତୁମେ ସୁଖେ ଖେଳ ହୋଲି ।୧୨।

ଏକି ନ୍ୟାୟର ଶାସନ,
ମରଣ ପାଇଁ କି ନାହିଁ ନିୟମ କାନୁନ? ।୧୩।।

ମୃତ୍ୟୁ କି ନୁହଁଇ, ତୁମ ଶାସନ ଅଧୀନ,
ଅବା ସିଏ ସ୍ୱୟଂକ୍ରିୟ ଅଟଇ ସ୍ୱାଧୀନ,
ସ୍ୱେଚ୍ଛାଚାରୀ ମନମୁଖୀ,
କ୍ରିୟା କଳାପରେ ତାର କେହି ନୁହେଁ ସୁଖୀ ।୧୪।

ନିର୍ଦ୍ଦିଷ୍ଟ ବୟସ ଯଦି ରହେ ମରଣକୁ,
ସବୁ ଦୁଃଖ ଅବ୍ୟବସ୍ଥା ଯାଆନ୍ତା ଦୂରକୁ,
ସର୍ବେ ହେଲେ ଦୃଢ଼ ମନ,
ମୃତ୍ୟୁ ଆଉ ନ ହୁଅନ୍ତା ଭୟର କାରଣ ।୧୫।

ଏବେ କିଛି ନିର୍ଦ୍ଦିଷ୍ଟତା ନଥିବାରୁ ତାର,
ବାଳବୃଦ୍ଧ ନିର୍ବିଶେଷେ ଭୟରେ ଅସ୍ଥିର,
ଗ୍ରୁଢେ ଘେନିଲେ ମନକୁ,
ପତିଆରା ନ ରହଇ ପର ମୁହୂର୍ତ୍ତକୁ ।୧୬।

ଡରି ଡରି ବାଳକାକୁ ବୁଢା ହେଲା ଆସି,
ଆଉ ଆଶା ନାହିଁ ତାର ଯିବ ତାଠୁ ଖସି,
ଯିବା କଥା ସୁନିଶ୍ଚିତ,
କିପରି ଯିବ ସେ କଥା କରେ ଆନ୍ଦୋଳିତ ।୧୭।

ପ୍ରାଣ ନେଲା ପୂର୍ବୁ ସିଏ ଅଶେଷ ଯାତନା,
ଭୋଗାଏ ପ୍ରାଣୀକୁ ତାର ନଥାଏ ଭାବନା,
କରେ ସମ୍ପୂର୍ଣ୍ଣ ଅଚଳ,
ଶଯ୍ୟାଗତ ହୋଇ ପ୍ରାଣୀ ହୁଅଇ ବିକଳ ।୧୮।

ହସ୍ତ ପଦାଦି ଅଚଳ ଇନ୍ଦ୍ରିୟ ଅବଶ,
ଉତ୍‌ଥାନଶକ୍ତି ରହିତ ସର୍ବାଙ୍ଗରେ କ୍ଳେଶ,
ମଳମୂତ୍ର ତ୍ୟାଗ ପାଇଁ,
ଶକ୍ତି ନରହଇ ବଡ ଦୟନୀୟ ହୋଇ ।୧୯।

ପୁଣି କେତେ କେତେ ଲୋକ ବସିବା ସ୍ଥାନରେ,
ଚଳିପଡ଼ି ତେଜେ ପ୍ରାଣ ଅଜଣା ଭାବରେ,
କାହାକୁ ନଦିଏ ଦୁଃଖ,
ସୁଖର ମରଣ ବୋଲି ରଟେ ଲୋକ ମୁଖ ।୨୦।

କାହା ପ୍ରାଣ ନିଏ ସୁଖେ ଦୁଃଖେ ବା କାହାର,
କି ଉପାୟେ ହୁଏ ସ୍ଥିର ନରେ ଅଗୋଚର,
ଅସ୍ଥିର କରଇ ପ୍ରାଣ,
ମୃତ୍ୟୁ ପାଖ ହୋଇ ବୃଦ୍ଧ କରଇ ମନନ ।୨୧।

କେତେ କେତେ ଲୋକଙ୍କର ଦେଖିଛି ମରଣ,
କିଏ ଦୁଃଖେ କିଏ ସୁଖେ ତେଜିଲେ ପରାଣ,
କେଉଁ ମୃତ୍ୟୁ ତାହାପାଇଁ,
ଦୁଃଖର କିବା ସୁଖର କିଏ କହିବଇଁ ।୨୨।

ପ୍ରତ୍ୟୟ ନ ଜାଗେ ମନେ ସୁଖ ମୃତ୍ୟୁ ପାଇଁ,
ଦୁଃଖ ମୃତ୍ୟୁ କଳ୍ପି ବୃଦ୍ଧ ଅସ୍ଥିର ହୁଅଇ,
ଭାବେ କିଏ ସାହା ହେବ,
ଅହର୍ନିଶ ବସି ପାଖେ ତା ସେବା କରିବ ।୨୩।

ଟେକାଉଠା ମଳମୂତ୍ର କରି ପରିଷ୍କାର,
ଔଷଧ ପଥ୍ୟାଦି ପୁଣି କେତେ ଉପଚାର,
କେଉଁ ଆତ୍ମୀୟ ତାହାର,
କରିବ ଏ କଷ୍ଟ କର୍ମ ତେଜି ଅହଙ୍କାର ।୨୪।

ଅଚଳ ରୋଗୀର ସେବା ନୁହଁଇ ସହଜ,
ଆନ୍ତରିକତା ନଥିଲେ ନୁହଁଇ ଏ କାର୍ଯ୍ୟ,
କେହି ନଆସେ ମନକୁ,
ଧିକ୍‌କାର କରଇ ବୃଦ୍ଧ ନିଜ କପାଳକୁ ।୨୫।

ଯାହାଙ୍କୁ ଦେଖିଛି ଦୁଃଖ ଭୋଗି ମରିବାର,
ସେବା ଯତନ ଅଭାବ ନଥିଲା ତାଙ୍କର,
ତାଙ୍କ ଆତ୍ମୀୟ ସ୍ୱଜନ,
ସବୁଥିଲେ ଯଥାବିଧି ଦେଇ ମନ ପ୍ରାଣ ।୨୬।

ବୃଦ୍ଧ କିମ୍ବା ହତାଶାରେ ହୁଅଇ ବିକଳ,
ଆତ୍ମୀୟମାନେ କି ତାର ଅଟନ୍ତି ଚଣ୍ଡାଳ,
କିବା ନିଜେ ସେ ଦୁର୍ବୃତ୍ତ,
ତୋଷିପାରି ନାହିଁ କେଉଁ ଆତ୍ମୀୟର ଚିତ୍ତ ।୨୭।

ନୁହଁନ୍ତି ଚଣ୍ଡାଳ କେହି ନୁହେଁ ସେ ଦୁର୍ବୃତ୍ତ,
ଅତୀତ ଉଣ୍ଡାଳି ବୃଦ୍ଧ ମନ କରେ ଶାନ୍ତ,
ସ୍ୱାର୍ଥ ବଶ ସଦା ନର,
ସ୍ୱାର୍ଥ ଯହିଁ ନାହିଁ ତହିଁ ନୁହେଁ କାରବାର ।୨୮।

ଦୁଃଖରେ ଦୁଃଖରେ ସେତ କାଟିଛି ଜୀବନ,
ଦେଇନି କାହାକୁ କିଛି ତୋଷିନି କା ମନ,
ନାହିଁ ବାସ ନାହିଁ ଧନ,
ଅତିଥି ପରାଏ ପୁଣି କାଟୁଅଛି ଦିନ ।୨୯।

ସୁସ୍ଥବେଳେ ଭିନ୍ନ କଥା ଯା ଘରେ ତା ଘରେ,
ଅତିଥି ହେଲେ ଆପତ୍ତି ନ ଉଠଇ ଭଲେ,
ମାତ୍ର ରୋଗବେଳ କଥା,
ଯା ଘରେ ଯିବ ତାହାର ହେବ ମୁଣ୍ଡବ୍ୟଥା ।୩୦।

ବେଓ୍ୟାରସ ମାଲ ପରି ହେବ ଅନାଦର,
ଦି ତିନି ଘର କୁଣିଆ ଓପାସ ପ୍ରକାର,
ସେବା କଥାରେ ରହିବ,
ଅଯତନରେ ପଡ଼ି ପଡ଼ି ପ୍ରାଣ ଉଡ଼ିଯିବ ।୩୧।

ବୃଦ୍ଧର ଭାବନାଧାରା ଚାଲେ ଏ ପ୍ରକାର,
ହତାଶାରେ ମ୍ରିୟମାଣ ହୋଇ ଯୋଡେ କର,
କହେ ପ୍ରଭୁ ଦୟାକର,
ଭଲବେଳେ ଛାଡୁ ପ୍ରାଣ ନୋହୁ ହରବର ।୩୨।

## ।। ଅନ୍ତ୍ୟେଷ୍ଟିକ୍ରିୟା ।।

(ଶବଦାହ ଓ ପିଣ୍ଡଦାନ କ୍ରିୟା ପୁତ୍ରର କର୍ତ୍ତବ୍ୟ ।)

ମୃତ ହେଲେ ଲୋକ ଶରୀର ହୋଇଯାଏ ଅଚଳ,
ଅଶରୀରୀ ହୋଇ ରହେ 'ମୁଁ' 'ସୂକ୍ଷ୍ମେ' ହୋଇଣ ମେଳ ।୧।

ଯାବତ ନୂତନ ଶରୀର, ନ ହୋଇଛି ପ୍ରାପତ,
ଗତ ପଦାର୍ଥରେ ନଜର, ରହେ ନୁହଁ ଚକିତ ।୨।

ଯେଉଁ ଶରୀରଟି ରକ୍ଷିତ, ହେଉଥିଲା ଯତ୍ନରେ,
ଏବେ ପଚି ହେବ ଦୁର୍ଗନ୍ଧ, ପୁଣି ଶ୍ୱାନ ଶୃଗାଳେ ।୩।

ଭକ୍ଷିବେ ମଶାଣି ପଦାରେ, ହୋଇବେ ଆନନ୍ଦିତ,
ଅଶରୀରୀ ଭାବେ ଦେଖି 'ମୁଁ' ନ ହେବି କି ଦୁଃଖିତ ।୪।

ଏଡାଇବା ପାଇଁ ଏ ଦୁଃଖ, ଅଛି ଶାସ୍ତ୍ର ନିୟମ,
ମୃତ୍ୟୁ ପରେ ପରେ ଶବକୁ, କରିଦେବ ଦହନ ।୫।

ପୁତ୍ରରୁ ଅଧିକ ଘନିଷ୍ଠ, ଅବା କିଏ ହୋଇବ,
ପୁତ୍ରସମ ଆନ୍ତରିକତା, ପୁଣି କାହାର ଥିବ ।୬।

ଦାହ କ୍ରିୟା ଏଣୁ ହୋଇଛି, ନ୍ୟସ୍ତ ପୁତ୍ର ଉପରେ,
ଏ ପାଇଁ ଜୀବନେ ପୁତ୍ରେକ, ଇଚ୍ଛି ଥାଆନ୍ତି ନରେ ।୭।

ଦହନ କ୍ରିୟାରେ ଜ୍ଞାତିଏ, ହୋଇଥାନ୍ତି ସହାୟ,
ଭୋଜିଭାତେ ତାଙ୍କୁ ସନ୍ତୁଷ୍ଟ, କରାଯିବା ବିଧେୟ ।୮।
ନୂତନ ଶରୀର ଧରିବ, ଅବା ହୋଇଛି ମୁକ୍ତ,
ବିଗତ ଆତ୍ମାର ଅବସ୍ଥା ନୁହେଁ ଆମକୁ ଜ୍ଞାତ ।୯।

ଆନୁମାନି ତିନି ପୁରୁଷ, କରୁ ତାହାର ସେବା,
ବିଗତ ଆତ୍ମାର ସନ୍ତୋଷ, ହୁଏ ଏଥିରେ ଅବା ।୧୦।

ପିଣ୍ଡଦାନ କରୁ ବର୍ଷକେ, ଥରେ ହୋଇ ପବିତ୍ର,
ଆମକୁ ଯା ହୁଏ ବରଷେ, ତାଙ୍କୁ ଦିନଟି ମାତ୍ର ।୧୧।

ଶ୍ରଦ୍ଧା ନିଷ୍ଠା ସହ ଯେ ପୁତ୍ର, ଏହା କରେ ପାଳନ,
ପିତୃ ଆଶୀର୍ବାଦ ଲାଭକୁ, ସିଏ ହୁଏ ଭାଜନ ।୧୨।

ପଞ୍ଚଯଜ୍ଞ ମଧ୍ୟେ ଏ କାମ, ହୋଇଥାଏ ଗଣନ,
ପଞ୍ଚଶୂନା ପାପ ବିନାଶ, ହୁଏ କଲେ ପାଳନ ।୧୩।

## ।। ନିଷ୍ପନତା ।।

(ମନୁଷ୍ୟର ମନରୂପ ଜିନିଷଟି ନ ଥିଲେ
ସେ ଅନୁଭବଶୂନ୍ୟ ହୋଇ ସବୁ
ସୁଖଦୁଃଖର ଉର୍ଦ୍ଧ୍ୱରେ ରହନ୍ତା)

(୧)
ଶୁଣ ବାରେ ଭଗବାନ,
ଦୟାକର ଅକିଞ୍ଚନ
ମୋଠୁ ଘେନି ଯା ମୋ 'ମନ'
ହୋଇଯାଏ ମୁଁ ନିଷ୍ପନ।
ଅନୁଭବ ହେଉ ଶୂନ,
ପାଲଟି ଯାଏ ପାଷାଣ।

(୨)
ନ ରହିଲେ ବୋଧଶକ୍ତି,
କିଛି ନ ପାରିବି ଚେତି।
ଜୀବନ ଜଂଜାଳମାନ,
ରହିବି ମୁହିଁ ଅଜାଣ
ନ କରିବି ନିବେଦନ,
ଦୁଃଖ ନାଶ ଭଗବାନ।

(୩)
ନିଃସ୍ୱ ତ ମୁଁ ହୋଇଥାଇ
'ମନ' ଥିବ କାହିଁ ପାଇଁ ?
କେଉଁ ଅନୁଭବ ପାଇଁ ?
ଦୁଃଖଛଡ଼ା ଅନ୍ୟ ନାହିଁ।

(୪)
ଦୁଃଖ ସୁଖ ମୂଳ 'ମନ',
'ମନ' ନାହିଁ ସବୁ ଶୂନ।
ମନହୀନ ପ୍ରାଣୀ ହୋଇ,
ବଞ୍ଚିକି ପାରିବ ନାହିଁ ?
ବୃକ୍ଷର କି 'ମନ' ଅଛି,
ରସ ଟାଣି ବଞ୍ଚି ଅଛି।

(୫)
ବୃକ୍ଷସମ ମନ ହୀନ,
କର ମୋତେ ଭଗବାନ।
ଭାବ ଅଭାବ ସମସ୍ୟା,
ଲୋଡା ନ ହେଉ ମୀମାଂସା।
ଯାଉ ମୋ ଦେହେ ମିଳାଇ,
ନ ପଶୁ କା କର୍ଣ୍ଣ ଦେଇ।

(୬)
ବୃକ୍ଷ ପରି ଖାଇ ପିଇ,
ବଞ୍ଚିଥିବି ଚାହିଁ ଚାହିଁ।
ଖରା ଆସୁ ବର୍ଷା ଆସୁ,
ଅବା ବାତ୍ୟା ଦେହ ନାଶୁ।
ବୃକ୍ଷ ନୁହେଁ ବିଚଳିତ,
କର ମୋତେ ବୃକ୍ଷବତ୍।

(୭)
କଥା ଅକଥା ଭଲମନ୍ଦ,
ମୋ ପାଇଁ ନ ଥିବ ପ୍ରଭେଦ।
ମନ ସଂଯମ ପାଇଁ ଯେତେ,
କଷ୍ଟ ରହିଛି ଶାସ୍ତ୍ର ମତେ।
ମୋ ପାଇଁ ନୋହିବ ତା ଲୋଡା,
ଯେଣୁ ମୁଁ ହେବି ମନ ଛଡ଼ା।
ସବୁ ଦ୍ୱନ୍ଦ୍ୱର ଉର୍ଦ୍ଧ୍ୱେ ରହି,
ବଞ୍ଚିବି ବଞ୍ଚିବାର ପାଇଁ।

## ।। ଧର୍ମ ।।

(ସମାଜରେ ଧର୍ମନୀତି ଠିକ୍‌ଭାବେ କେତେ ଲୋକ
ପାଳନ କରିଥାନ୍ତି ?)

ସମାଜ ଦୁର୍ଗତି ଦେଖି ଥୋକେ ଲୋକ
ହରି ଛାଡୁଛନ୍ତି କହି,
ଅଧର୍ମ ବ୍ୟାପିଲା ପ୍ରଭୁ ରକ୍ଷାକର
ନୋହିଲେ ଭାସିଲା ମହୀ ।୧।

ସମାଜରେ କିଏ ଅଟଇ ଧାର୍ମିକ
ଜାଣିତ ପାରିଲି ନାହିଁ,
ନିଜକୁ ନିଜେ ମୁଁ ସନ୍ଦେହ କରୁଛି
ଧର୍ମ କି ପାଳୁଛି ମୁହିଁ ? ।୨।

ଧର୍ମ ଖାଲି ନୁହେଁ ଈଶ୍ୱର ବିଶ୍ୱାସ
ପୂଜା ଭଜନର କଥା,
ନୁହେଁ ଧର୍ମ ତାହା ସମାଜ ଅହିତ
ସାଧନ କରେ ଯେ ପ୍ରଥା ।୩।

ବ୍ୟକ୍ତିର ମଙ୍ଗଳେ ସମାଜ ମଙ୍ଗଳେ
ଉଦ୍ଦିଷ୍ଟ ଯେ ପରମ୍ପରା,
ଚରିତ୍ର ଗଠନ ପାଇଁ ଯେତେ ନୀତି
ଅଟଇ ଧର୍ମର ଧାରା ।୪।

ଈଶ୍ୱର ବିଶ୍ୱାସ ଛଡ଼ା ଏହିପରି
ଯେତେ ଅଛି ଧର୍ମ ନୀତି,
ଠିକ୍ ଠିକ୍ ଭାବେ କେହି କି ସମାଜେ
ପାଳନ କରୁ ଅଛନ୍ତି ? ।୫।

ଅନ୍ୟାୟରେ ଧନ ଅର୍ଜିଲେ ଯେପରି
ହାନି ହୁଏ ଧର୍ମ ନୀତି,
ଅନ୍ୟ ନିୟମର ଅପାଳନେ ମଧ୍ୟ
ଘଟିଥାଏ ସମଭ୍ରାନ୍ତି ।୬।

ଟାଣକଥା କହି କାହାରି ମନରେ
ଦେଲେ ଯେବେ ତାକୁ କଷ୍ଟ,
ପରନିନ୍ଦା ପୁଣି ନିଷ୍ଠୁରତା କରି
ହେଉଥାଅ ଯେବେ ତୁଷ୍ଟ ।୮।

ଗୁରୁ, ଗୁରୁଜନେ ଅସମ୍ମାନ ପୁଣି
ଲଘୁଜନେ ନାହିଁ ସ୍ନେହ,
ପରମ୍ପରା ଭାଙ୍ଗି ଶାସ୍ତ୍ରକୁ ଉପେକ୍ଷି
ବଢ଼ୁଥାଅ ଯେବେ କୋହ ।୯।

ଶୌଚ ସଦାଚାର ବିହୀନ ଜୀବନ
କାଟୁଥାଅ ଯେବେ କ୍ରୁଦ୍ଧ,
ଅନ୍ୟାୟରେ ଧନ ଅରଜୁଛି ଯିଏ
ତା ସଙ୍ଗେ ସମ କି ନୁହଁ ? ।୧୦।

ସମାଜର କ୍ଷତି କରଇ ନାହିଁ କି
ଏହି ଅପକର୍ମମାନ,
ସେନେହ ସୌହାର୍ଦ୍ଦ୍ୟ ପର ଉପକାର
ସମାଜରେ ହୁଏ ସ୍ୱପ୍ନ ।୧୧।

ଅଧର୍ମ କରୁଛି ବୋଲି ଯେବେ ଆମେ
ତାହାକୁ କହିବା 'ଚୋର',
ସମାଜରେ କେହି ଏ ଘୃଣ୍ୟ ପଦରୁ
ପାଇବେ ନାହିଁ ଉଦ୍ଧାର ।୧୨।

ଲାଞ୍ଚଯିଏ ନେଲା	ଅଧର୍ମ କରିଲା
ଲାଞ୍ଚ ଯିଏ ଦେଲା ଭାଇ,
ଅଧର୍ମ କାମରେ	ସମଭାବେ ଭାଗୀ
ହୋଇବ ନାହିଁ କି ସେହି ? ।୧୩।

କେହି ବଡ କେହି	ସାନ ହେବ ସିନା
ସମସ୍ତେ ଅଟନ୍ତି ଚୋର,
ଅଧର୍ମ ବିଲୋପେ	ପ୍ରକୃତରେ କେହି
ଚାହାନ୍ତିନି ପ୍ରତିକାର ।୧୪।

ଧର୍ମନୀତି ବୁଝି	ଧର୍ମ ପାଳନରେ
ସମସ୍ତେ ନୋହିଲେ ବ୍ରତୀ,
ସମାଜୁ ଦୁର୍ଗତି	ହଟିବା ସହଜ
ନୁହେଁ ଏ ଦୃଢ଼ ପ୍ରତୀତି ।୧୫।

ଦୁର୍ଗତି ଯେପରି	ରହିଛି ସେପରି
ରହିଥିବ ସଦାକାଳେ,
ଦୁର୍ଗତି ବିରୋଧେ	ଚିତ୍କାର କେବଳ
ଶୁଭୁଥିବ ବେଳେ ବେଳେ ।୧୬।

## ॥ ଜୀବନ-ଏକ ଗପ ॥

ଜନ୍ମନଗର ଦେଖିଛ ? ଦେଖିଛ ନିଶ୍ଚୟ। ମାତ୍ର ଏ ନାମରେ ତାକୁ ଜାଣିନା। ତୁମ ଜଣା ନାଁଟି ହେଉଛି ଜଗତ। ଜଗତରେ ଆମେ ଜନ୍ମ ହୋଇଛୁ। ବରଂ ତାକୁ ଜନ୍ମନଗର କହିଲେ ଅଧିକ ଅର୍ଥପୂର୍ଣ୍ଣ ହେବ। ବସ୍ତୁତଃ ସୃଷ୍ଟିବେଳେ ତାହାର ଏହି ନାମ ଥିଲା। କାଳକ୍ରମେ ଏ ନାମଟା ବିସ୍ମୃତ ହୋଇଗଲାଣି। ଆଉ ଗୋଟିଏ ନଗର ଅଛି ତାହା ହେଉଛି ଜୀବନଗର। ଜନ୍ମନଗରର ସୃଷ୍ଟି ପରେ ତାହା ସହିତ ଖାପ ଖୁଆଇବା ପାଇଁ ତାକୁ ମୃତ୍ୟୁନଗର କୁହାଯାଉଛି। କାରଣ ଜୀବନ ମାନେ ସେ ନଗରକୁ ଫେରିଯିବା ଘଟଣାକୁ ଆମେ ମୃତ୍ୟୁ କହିଥାଉଁ। ସେ ନଗର ଏ ନଗର ପରି ନୁହେଁ। ପ୍ରକୃତରେ ଆମେ କେହି ଦେଖିନାହୁଁ ତାକୁ, ଯଦିଚ ସେଇଠୁ ଆସିଛୁ। ଆମର ସେଠାରେ କିଛି ସ୍ମୃତି ନାହିଁ। ତେଣୁ ସେ ନଗରର କାହାଣୀ ବିସ୍ମୃତ, ଜଳବାୟୁ, ଶାସନ ପଦ୍ଧତି, ରୀତିନୀତି ଇତ୍ୟାଦି ଏ ନଗରକୁ ଅଜଣା। ତଥାପି ଆଲୋଚନାରୁ ଅନେକ କଥା ବିଶ୍ୱସନୀୟ ଭାବରେ ଜଣାପଡ଼େ। ସେ ନଗରଟି ବହୁ ଆଗରୁ ଥିଲା ବା ବରାବର ରହିଛି। ସେଠି ଜଣେ ମହାଜୀବ ଥାଆନ୍ତି। ଜୀବନମାନେ ତାଙ୍କ ଭିତରେ ପୁଞ୍ଜୀଭୂତ ହୋଇ ଏକକ ଭାବରେ ଥିଲେ। କାଳକ୍ରମେ ତାଙ୍କର କୌଣସି କାରଣରୁ ଇଚ୍ଛା ହେଲା-ଏ ଜୀବନମାନଙ୍କୁ କିଛି ସ୍ୱାତନ୍ତ୍ର୍ୟ ଦେଇ କର୍ମଶୀଳ କରିବେ। କର୍ମଶୀଳ ହେବାପାଇଁ ଆବରଣ, ପରିଚ୍ଛଦ ବା ଶରୀର ଦରକାର। ମାତ୍ର ଜୀବନଗରରେ ସେସବୁ ସମ୍ଭବ ନୁହେଁ। ତେଣୁ ତାଙ୍କୁ ଜନ୍ମନଗର ସୃଷ୍ଟି କରିବାକୁ ପଡ଼ିଲା ଏବଂ ସେଠାରେ ଜୀବମାନେ ଜନ୍ମ ହେଲେ। କାରଣ ଆବରଣ ଗ୍ରହଣ କରିବାର ଅନ୍ୟ ନାମ ହିଁ ଜନ୍ମ।

ଅନୁମାନ କରାହେଉଛି-ପ୍ରଥମ କେତୋଟି ଜୀବନ ମହାଜୀବଙ୍କ ଇଚ୍ଛାନୁସାରେ ଅନ୍ୟ କୌଣସି ଜୀବନଠାରୁ ଜନ୍ମ ନ ହୋଇ (ସେତେବେଳେ ଜନ୍ମନଗର ନଥିଲା କି ଜୀବନ ସେଠାରେ ନଥିଲା) ଏଠାକୁ ଆସି କୌଣସି ନା କୌଣସି ଆବରଣ ଗ୍ରହଣ କରି ଚଲାବୁଲା କରିଥିବେ। ମହାଜୀବଙ୍କର ତ ଇଚ୍ଛା ଜନ୍ମନଗର ଜୀବନପୂର୍ଣ୍ଣ ହେବ। ତେଣୁ ଯେଉଁ ଜୀବନ ପ୍ରଥମେ ଆସିଲେ, ସେମାନେ ନାନାଭାବରେ ବୃଦ୍ଧିଲାଭ କରନ୍ତୁ-ଏହି ଆଶୀର୍ବାଦ ନିଶ୍ଚୟ ଦେଇଥିବେ। ଫଳରେ ଜୀବନମାନେ କାଳକ୍ରମେ ବିଭିନ୍ନ ରୂପ ଆକାର, ଅବୟବ ଧାରଣ କରି ବଂଶ ବୃଦ୍ଧି କରି ଏବେ କୋଟି କୋଟି ପ୍ରକାର ହୋଇଗଲେଣି। ଏପରି ହେଲେ ମଧ୍ୟ ମହାଜୀବଙ୍କ ସହିତ ଜୀବନମାନଙ୍କର ଯେଉଁ ଯୋଗସୂତ୍ର ବରାବର ସୂକ୍ଷ୍ମ ଭାବରେ ଥାଏ ଏବଂ ମହାଜୀବ ଜୀବନମାନେ ସର୍ବଦା ଏକକ ହୋଇ ରହନ୍ତି।

ଜୀବନମାନଙ୍କର କ୍ରିୟାକଳାପ ସମସ୍ତ ମହାଜୀବଙ୍କ ଦ୍ୱାରା ନିୟନ୍ତ୍ରିତ ହୁଏ। ମାତ୍ର ଏ ନିୟନ୍ତ୍ରଣ କର୍ମଟି ସେ ନିଜେ ନକରି କର୍ମଚାରୀ ଦ୍ୱାରା କରାନ୍ତି। କର୍ମଚାରୀର ନାମ ମାୟା ବା ପ୍ରକୃତି। ତାହାର କର୍ମ ଦକ୍ଷତାର ସହ ସମ୍ପାଦନ କରିବା ପାଇଁ ମହାଜୀବ ତାକୁ ତିନୋଟି ଅସ୍ତ୍ର ଦେଇଥାନ୍ତି। ସେଗୁଡ଼ିକ ହେଲା ସତ୍ତ୍ୱ, ରଜ, ତମ। ବସ୍ତୁତଃ

ସେ ପ୍ରକୃତି ବା ମାୟା ଏହି ତିନୋଟି ଅସ୍ତ୍ରରେ ହିଁ ତିଆରି। ମହାଜୀବଙ୍କ ଇଚ୍ଛାକୁ ଅନୁସରଣ କରି ଏହି ଅସ୍ତ୍ର ସାହାଯ୍ୟରେ ସେ ସମସ୍ତ ଜନ୍ମନଗରକୁ ନିୟନ୍ତ୍ରଣ କରନ୍ତି। ଏ ଅସ୍ତ୍ରଗୁଡିକ ଜଡ଼ ହେଲେ ମଧ ମହାଜୀବଙ୍କ ସାନିଧ ଯୋଗୁ ସେମାନଙ୍କର କ୍ରିୟଶକ୍ତି ଜାତ ହୁଏ।

ଜୀବନମାନେ ଜନ୍ମନଗରରେ ଜନ୍ମ ହେଲାପରେ ସେମାନେ ଏକ ଏକ ପୁରୁଷ ବୋଲି କଥିତ ହୁଅନ୍ତି। ସେହି ହିସାବରେ ମହାଜୀବଙ୍କୁ ଶ୍ରେଷ ପୁରୁଷ ବା ପୁରୁଷୋତ୍ତମ କୁହାଯାଏ। ଏହି ପୁରୁଷମାନେ ଏପରି ଭାବରେ ମାୟା ଦ୍ୱାରା ଆଛନ୍ନ ରହନ୍ତି ଯେ ସେମାନେ ସ୍ୱଗୃହ, ସ୍ୱସ୍ଥାନ, ସର୍ବୋପରି ପୁରୁଷୋତ୍ତମଙ୍କୁ ଭୁଲିଯାଆନ୍ତି ଏବଂ ତାଙ୍କର ସେବା ନକରି ମାୟାର ସେବାରେ ଲାଗିଯାଆନ୍ତି। ଫଳରେ ତାଙ୍କଠାରେ ପୁନଶ୍ଚ ଏକୀଭୂତ ହେବା ଦୁରୁହ ହୋଇପଡ଼େ। ଏହିପରି ଜନ୍ମନଗରର ଉତ୍ପତ୍ତି ହେଲା ଏବଂ ସେଠାରେ ଜୀବନମାନେ ଜନ୍ମହେଲେ ଏବଂ ପ୍ରକୃତି ପ୍ରଭାବରେ ନାନାପ୍ରକାର କର୍ମରେ ନିୟୋଜିତ ହେଲେ। ଏଥିରୁ ଜଣାଯାଉଛି–ଜୀବନଗର ବା ମୃତ୍ୟୁନଗର ହେଉଛି ଜୀବମାନଙ୍କର ସ୍ୱସ୍ଥାନ। ସେମାନେ ଜନ୍ମନଗରକୁ ଆସିଲେ ମଧ ତାଙ୍କ ମନଟି ସ୍ୱସ୍ଥାନରେ ବା ମୃତ୍ୟୁ ନଗରରେ ଥାଏ। ସେଠାକୁ ଚାଲି ଯିବାକୁ ସେମାନେ ସର୍ବଦା ବ୍ୟାକୁଳ। ସ୍ୱସ୍ଥାନ ପ୍ରୀତି କାହାର ନାହିଁ ? ବିଦେଶରେ ଯେତେ ଭଲରେ ରହିଲେ ମଧ ଗାଁ କଥା କ'ଣ ଭୁଲିହୁଏ ? ବସ୍ତୁତଃ ଜୀବନମାନେ, ଏଠାକୁ ଆସିବା ମୁହୂର୍ତ୍ତରୁ ଜୀବନଗରକୁ ଧାଉଁଥାନ୍ତି। ସେଠାରେ ପ୍ରବେଶ ମୁହୂର୍ତ୍ତରେ ଏଠାର ସମସ୍ତ ଆବରଣ ପରିତ୍ୟାଗ କରନ୍ତି। ଏପରିକି ଏଠାର ସ୍ମୃତି ମଧ ରଖନ୍ତି ନାହିଁ। ପୂର୍ବେ ଯେପରି ମହାଜୀବଙ୍କଠାରେ ପୁଞ୍ଜୀଭୂତ ହୋଇଥିଲେ ଫେରିଲାପରେ ଆଉ ସେପରି ଅବସ୍ଥାନ ସମସ୍ତଙ୍କ ପକ୍ଷରେ ସମ୍ଭବ ହୁଏନାହିଁ।

ସେମାନେ ସୂକ୍ଷ୍ମଭାବରେ ଅଲଗା ଅଲଗା ରହନ୍ତି। କେହି କେହି ଚାଲାଖଚତୁର ଜୀବନ କହିପୋଛି ନିଜର ପବିତ୍ରତା ବା ପରିଚ୍ଛନ୍ନତା ପ୍ରମାଣ କରି ମହାଜୀବଙ୍କଠାରେ ଏକୀଭୂତ ହୋଇଯାଆନ୍ତି। ଏଇଟା ହେଉଛି ସ୍ୱଗୃହ ପ୍ରବେଶ। ସ୍ୱଗୃହରେ ରହିଲେ ଆଉ କୌଣସି ଜଞ୍ଜାଳ ରହେନାହିଁ। ସେଥିପାଇଁ ସ୍ୱଗୃହ ପ୍ରବେଶକୁ ସମସ୍ତେ ଇଚ୍ଛା କରନ୍ତି–ମାତ୍ର ଲାଭ କରନ୍ତି ଖୁବ୍ କମ୍। ସେଠାରେ ବି ସେମାନଙ୍କୁ ବେଶୀ ସମୟ ରହିବାକୁ ଦିଆଯାଏ ନାହିଁ। କାରଣ ଜୀବନଗର ସେପରି ହେଲେ ଜୀବନବହୁଳ ହୋଇଯିବ। ଏମାନେ ତ ପୂର୍ବପରି ଏକୀଭୂତ ହୋଇ ପାରୁନାହାନ୍ତି। ତେଣୁ ସେମାନେ ପୁଣି ଏଠାରେ ଜନ୍ମ ହୁଅନ୍ତି ଯାହାକୁ ପୁନର୍ଜନ୍ମ କୁହାଯାଏ। ପୁଣି ବିକଳ ହୋଇ ସେଠାକୁ ଯାଆନ୍ତି। ଏହିପରି ଯିବା ଆସିବା ଜନ୍ମନଗର ଆଉ ଜୀବନଗର ଭିତରେ ଅବାରିତ ଭାବରେ ଅହରହ ଚାଲିଛି। ମଝିରେ ମଝିରେ ଜଣେ ଜଣେ ମହାଜୀବଙ୍କଠାରେ ଏକୀଭୂତ ହୋଇଯାନ୍ତି। ମାତ୍ର ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି ନଗଣ୍ୟ।

ଏଠାରେ ଥିଲାବେଳେ ଯେଉଁ ଆବରଣ ଥିଲା, ଫେରିବା ପରେ ସେହି ଆବରଣ ହେବ, ତାହାର କିଛି ନିଶ୍ଚୟତା ନାହିଁ। ଏହା ନାନା ଭାବରେ ଭିନ୍ନ ହୋଇପାରେ। ଆବରଣ ବଦଳିଯାଏ, ସ୍ମୃତି ବି ନଥାଏ। ତେଣୁ ନିଜର ଘନିଷ୍ଠ ଆତ୍ମୀୟ ହୋଇଥିଲେ ମଧ ଚିହ୍ନା ପରିଚୟ ହୋଇପାରେ ନାହିଁ। ଏହିପରି ଏ ନଗର କାହାଣୀ ସେ ନଗରକୁ ଯାଏ ନାହିଁ କିମ୍ବା ସେ ନଗର କାହାଣୀ ଏ ନଗରକୁ ଆସେ ନାହିଁ। ଖାଲି ଜୀବନମାନେ ଆସନ୍ତି ଯାଆନ୍ତି। ଆସିଲାବେଳେ ତ ବରାବର ସୂକ୍ଷ୍ମ ଭାବରେ ଆସନ୍ତି। ଫେରିଲାବେଳେ ମଧ ସେ ନଗରରେ ପ୍ରବେଶ ପୂର୍ବରୁ ସବୁ ଛାଡ଼ି ସୂକ୍ଷ୍ମଭାବରେ ଯାଆନ୍ତି। ଏ ପରିହାର ସତ୍ତ୍ୱେ ଜୀବନମାନେ ନିଜର ମୌଳିକତା ହରାନ୍ତି ନାହିଁ।

ଜନ୍ମନଗରରୁ ଜୀବନଗରକୁ ଯିବାପାଇଁ ଗୋଟିଏ ପଥ–ତାହା ଜୀବନ ପଥ। ଜନ୍ମନଗରରୁ ଜୀବନଗରକୁ ଲମ୍ବିଥିବା ପଥର ଦୈର୍ଘ୍ୟ ନିର୍ଦ୍ଦିଷ୍ଟ। ତାହା ବଢ଼େ ନାହିଁ କି କମେ ନାହିଁ। କାରଣ ଜନ୍ମନଗର ଆଉ ମୃତ୍ୟୁନଗର ତାଙ୍କର ସ୍ଥିତି ପରିବର୍ତ୍ତନ କରନ୍ତି ନାହିଁ। ସେ ପଥର ଅବସ୍ଥା ସବୁଜାଗାରେ ସମାନ ନୁହେଁ। ଯାତ୍ରୀକୁ ଯିବାରେ ମଧ୍ୟ ସମୟ ଲାଗେ। ଏହି ସମୟକୁ ଆୟୁଷ କୁହାଯାଏ। ଏହି ବିଭିନ୍ନ ଯାତ୍ରୀପାଇଁ ବିଭିନ୍ନ ହେବାରେ ବୈଚିତ୍ର୍ୟ କଅଣ ? ଏ ଜୀବନପଥକୁ କେହି ସୁରୁଖୁରୁରେ ଅତିକ୍ରମ କରିପାରନ୍ତି ନାହିଁ– କାହାର ଗୋଡ଼ ଭାଙ୍ଗେ– କାହାର ଗାଡ଼ି ଭାଙ୍ଗେ– କାହାର ଜାହାଜ ଖସିପଡ଼େ କେତେବେଳେ ପରସ୍ପର ଧକ୍‌କା ହୋଇ ଆକ୍‌ସିଡେଣ୍ଟ ହୁଏ – ପରସ୍ପର ଭିତରେ ଲୁଟ୍‌ତରାଜ ବି ହୁଏ–ମାଡପିଟ୍ ହୁଏ–ଦଳାଦଳି ହୁଏ। ସଂଘର୍ଷ, ପ୍ରତିଯୋଗିତା, ଈର୍ଷା, ଦ୍ୱେଷ, ଦ୍ୱନ୍ଦ୍ୱ, ଷଡ଼ଯନ୍ତ୍ର, କେତେବେଳେ ଆନନ୍ଦ କେତେବେଳେ ନିରାନନ୍ଦ, ଏ ଜୀବନପଥେ ଯାତ୍ରୀଙ୍କର ସ୍ୱାଭାବିକ ପ୍ରକ୍ରିୟା। ଏ ପଥର ଯାତ୍ରୀମାନଙ୍କୁ ନିରାପତ୍ତା ଦେବା, ପଥର ରକ୍ଷଣାବେକ୍ଷଣ କରିବା ଦାୟିତ୍ୱ ଯାହାଙ୍କ ଉପରେ (ମହାଜୀବ), ସେ ମହାଶୟ ଯାତ୍ରୀଙ୍କ ସ୍ୱଭାବ, ଆଚାର ବ୍ୟବହାରରେ ଅସନ୍ତୁଷ୍ଟ ହେଲେ ମଧ୍ୟ ହଠାତ୍ ରୋକି ଦିଅନ୍ତି ନାହିଁ। ନୀରବଦ୍ରଷ୍ଟା ସାଜି ସବୁକିଛି ଉପଲବ୍ଧି କରୁଥାନ୍ତି। ଯେତେବେଳେ ମାତ୍ରା ଅତ୍ୟଧିକ ହୁଏ, ଅବସ୍ଥା ଅସମ୍ଭାଳ ହୁଏ, ସେତେବେଳେ ସେ ସଦଳବଳେ ଆସି ମାରଧର କରି ସୁବ୍ୟବସ୍ଥା କରନ୍ତି। ଏହାକୁ ମହାଜୀବଙ୍କର ଅବତାର ଗ୍ରହଣ କୁହାଯାଏ। ଗଣ୍ଡଗୋଳ କିଛିଦିନ କମିଯାଏ। ପୁଣି ଯେଉଁ କଥାକୁ ସେଇ କଥା। ଏ ଜୀବନପଥେ ବରାବର ଏଇଆ। ଆମେ ସମସ୍ତେ ଏକମନ ହୋଇ ଚେଷ୍ଟାକଲେ ଏ ଜୀବନପଥରୁ ଅନେକ ଅସୁବିଧା ଦୂର ହୋଇପାରନ୍ତା ଏବଂ କିଛି ରହିଲେ ମଧ୍ୟ ପରସ୍ପର ସାହାଯ୍ୟ ସହାନୁଭୂତି ବଳରେ ଅଳ୍ପ ବାଧାରେ ପାରିହୋଇ ପାରନ୍ତେ। ତାହା ନକରିବା କାହିଁକି ଯେ–ଯିବାକୁ ତ ହେବ। ମୃତ୍ୟୁ ନଗରର ଡାକରା ତ ଏଡାଇ ହେବ ନାହିଁ ଆଉ ପଥ ତ ଗୋଟିଏ।

ଜୀବନ ପଥରେ ଯାତ୍ରୀମାନଙ୍କର ଆଶ୍ରୟ ପାଇଁ ସ୍ଥାନେ ସ୍ଥାନେ ଯାତ୍ରୀନିବାସ ରହିଛି। ଅଧିକ ବିଶ୍ରାମ ଓ ଆରାମ ଯଦି ଦରକାର ହୁଏ ସେମାନେ ଘରଗୁଡ଼ିକର ଯତ୍ନ ନେଇଥାଆନ୍ତି। ଅଜ୍ଞାନତା ଯୋଗୁଁ ଆରାମ କରୁକରୁ ଆରାମରେ ମଜ୍ଜିଯାଇ ଟିକେ ଲମ୍ବା ସମୟ ରହିଯାଆନ୍ତି। ତେଣୁ ଘରପ୍ରତି ତାଙ୍କର ଟିକେ ମମତା ଅଧିକା ଜନ୍ମେ ଏବଂ ଯତ୍ନ ନେବାକୁ ଆଗ୍ରହୀ ହୁଅନ୍ତି।

ଆଗରୁ କୁହାଯାଇଛି–ଜୀବନମାନେ ଆବରଣ, ସ୍ମୃତି ପରିହାର କରିଲେ ମଧ୍ୟ ନିଜର ମୌଳିକତା ହରାନ୍ତି ନାହିଁ। ସେହି ମୌଳିକତା ବା ରୁଚିସତ୍ତା ବରାବର ଥାଏ। ଏହି ରୁଚିସତ୍ତା ଅନୁସାରେ ସେମାନଙ୍କ ଜୀବନର ରୁଚି ନିରୂପିତ ହୋଇଥାଏ।

ଜୀବନଗରକୁ ପୁନଃପୁନଃ ଆସିବା ଏବଂ ସେଠାକୁ ପୁନଃପୁନଃ ଯିବା ହେଲା ଜୀବନମାନଙ୍କର କାମ। ଏ ଯିବା ଆସିବା କାମଟି ସୁରୁଖୁରୁରେ ସମ୍ପାଦିତ ହେବାପାଇଁ ସର୍ବପ୍ରଧାନ ଉପାୟ ହେଉଛି–ପାରସ୍ପରିକ ବୁଝାମଣା ଓ ସହାନୁଭୂତି। ଏହା ମଧ୍ୟ ମହାଜୀବଠାରେ ଏକୀଭୂତ ହେବାରେ ପରୋକ୍ଷ ଭାବରେ ସହାୟକ ହୁଅନ୍ତି। ଅର୍ଥାତ୍ ଆଉ ଯିବା ଆସିବା ରୂପକ କଷ୍ଟ ସହିବାକୁ ପଡ଼ନ୍ତା ନାହିଁ। ଯାହାକୁ ମୁକ୍ତି କୁହାଯାଏ। କିନ୍ତୁ ଏକଥା ବୁଝୁଛି କିଏ ? ଯିଏ ବୁଝାଇବ, ସେ ଉପହାସର ପାତ୍ର ହେବ। କାରଣ ମୁକ୍ତି କିଏ ପାଉଛି ବା ନ ପାଉଛି ତାହା ତ କେହି ବୁଝିପାରୁ ନାହିଁ। ତେଣୁ କେଉଁ ସାହସରେ କିଏ କାହାକୁ ବୁଝାଇବ ? ଏଥିପାଇଁ ଜୀବନ ଦର୍ଶନ କାଳେ କାଳେ ଅବୁଝା, ଅବିଶ୍ୱସନୀୟ ହୋଇ ରହିଆସିଛି।

## ।। ପ୍ରେମିକାର ଦ୍ୱନ୍ଦ୍ୱ ।।

ସୁଯୋଗର ଫଳ ଅବା ଏ ଦୁର୍ଯୋଗ
ପ୍ରେମରେ ମୁଁ ଗଲି ଫସି,
ଆପେ ମନ କଲି ମନାଇଲେ ସେ ବା
ଭାବୁଅଛି ଏବେ ବସି।

ପ୍ରେମ କଳ୍ପନାରେ ମନ ଉଲ୍ଲସଇ
ଦେହ ହୁଏ ଶିହରିତ,
ବାସ୍ତବ ଅବସ୍ଥା ସୁଖରୁ ଅଧିକ
ଦୁଃଖ ହୁଏ ତା'ଠୁ ଜାତ।

ମିଳନ ସମୟ ବିଜୁଳି ଝଟକ
ବିଚ୍ଛେଦଟି ଅସରନ୍ତି,
ପୁନର୍ମିଳନକୁ ଅନାଇ ଅନାଇ
ମନ ହେଉଥାଏ ଘାଣ୍ଟି।

ପ୍ରେମିକ ନାଗର ପାଶେ ଥିଲାବେଳେ
ଆନନ୍ଦ ଜୁଆର ବହେ,
ଦୂର ହେବାମାତ୍ରେ ବିଷାଦ କାଳିମା
ପରିବେଶେ ଘୋଟିଯାଏ।

ଗହଳିରେ ଥାଇ ନିଃସଙ୍ଗତା ବୋଧ
କୋଳାହଳେ ଶୂନଶାନ,
ହଜିଗଲା ଅବା ଛାଡ଼ିଦେଲି
କିଛି ସ୍ଥିର ରହେ ନାହିଁ ମନ।

ଯେତେ ଅଭିନୟ ମୋ ଅଙ୍ଗେ ପ୍ରେମିକ
କରିଥାନ୍ତି ପାଶେ ଥିଲେ,

ବିଚ୍ଛେଦ ବେଳରେ ମନେପଡ଼ି ତାହା
ମନକୁ ଉଚ୍ଚାଟ କରେ।

ପୁନର୍ମିଳନର ସମୟରୁ ଅଧେ
ମାନ ଅଭିମାନେ କଟେ,
କହେ ବାରମ୍ବାର ବିଚ୍ଛେଦ ଘଟାଇ
ଦୁଃଖ କିମ୍ପା ଦିଅ ମୋତେ।

ପ୍ରେମିକ କହନ୍ତି ବିଚ୍ଛେଦ ମିଳନ
ପ୍ରେମର ଦୁଇଟି ଭାଗ
ଏକ ପ୍ରାକ୍କୃକାଲ ଅନ୍ୟଟି ଥିଓରି
ଉଭୟରେ ସୁଖ ଯୋଗ।

ମାନ ଅଭିମାନ ଭିଡ଼ାଭିଡ଼ି ସଙ୍ଗେ
ଜଡ଼ାଜଡ଼ି ଆଲିଙ୍ଗନ,
ଚୁମ୍ବନ ସାଙ୍ଗକୁ ଅଳି କଳି କେତେ
ମିଳନର କୀର୍ତ୍ତିମାନ।

ମୋର ନାହିଁ ନାହିଁ ନୁହେଁ 'କାଳେ ନାହିଁ
ଦିଅନ୍ତି ନାହିଁ ସେ କାନ,
କେଶ ବାସ ମୋର ଅବିନ୍ୟସ୍ତ ହେଲେ

ନଥାଏ କାହାର ଧ୍ୟାନ।
ମିଳନ ପର୍ବର ଏ ସୁଖ ସମ୍ଭାର
ସ୍ୱପ୍ନ ହୁଏ ବିଚ୍ଛେଦରେ
ପ୍ରେମିକଙ୍କ ଉକ୍ତି ଉଭୟ ସୁଖଦ
ସତ୍ୟଠାରୁ ବହୁଦୂରେ।

ଜାଣିତ ହୁଏନି ପ୍ରେମ ରୀତିନୀତି
ପ୍ରେମରେ ପଶିବା ଆଗୁ
ପ୍ରେମ କଳ୍ପନା ତ ମିଳନ ସର୍ବସ୍ୱ
ବିଚ୍ଛେଦ ଭାବନା ଲଘୁ।

ଯେତିକି ଜାଣିଲି ସେତିକିରେ ଇଚ୍ଛା
ପ୍ରେମର ସଂସ୍କାର ହେଉ,

ଥିଓରିରେ ଆଉ ନାହିଁ ଦରକାର
ପ୍ରାକ୍ଟିକାଲେ ଦିନ ଯାଉ।

ଅଖଣ୍ଡ ମିଳନେ ସଞ୍ଚାରିତ ହେବ
ଅଖଣ୍ଡ ସୁଖର ଧାରା,
ପ୍ରେମ କରି ଆଉ କାତର ହେବେନି
ଅଳପ ବୟସୀ ବାଳା।

ତଥାପି ମନରେ ଆଶଙ୍କା ଜାଗଇ
ଭାବି ପ୍ରେମ ପରିଣତି
ବିବାହରେ ତାହା ନହୋଇଲେ ସିଦ୍ଧ
କି ହେବ ଜୀବନ ଗତି ?

## ।। ଚାକିରି ଓ ବିବାହ ।।

ମାଟ୍ରିକ୍ ପାସ୍ ପରେ ମୋର ପାଠ ପଢ଼ାରେ ଡୋରି ବନ୍ଧା ହେଲା। ଏ ପର୍ଯ୍ୟନ୍ତ ମୋ ପାଠ କଥା ମୁଁ ବୁଝୁଥିଲି। ଆଉ କେହି ବୁଝୁନଥିଲେ। କିଏ ବା ବୁଝନ୍ତା ? ମାଇନର ପାସ୍ ପରେ ମଧ୍ୟ ବନ୍ଦ ହୋଇଥିଲା। ମୁଁ ବରଙ୍ଗପୁରରୁ ବିଦାୟ ନେଇ ଗାଁକୁ ଚାଲିଯାଇଥିଲି। ମାତ୍ର ମୋ ଭାଗ୍ୟରେ ଅଛି ହାଇସ୍କୁଲରେ ପଢ଼ିବା। ସେଥିପାଇଁ ପ୍ରାରବ୍ଧ ବୃତ୍ତିଟିଏ ଦେଇ ଅନୁକୂଳ ପରିସ୍ଥିତି ସୃଷ୍ଟି କଲା। ମୋ ବିଚାରରେ ମୁଁ ବୃତ୍ତି ପାଇଁ ଯୋଗ୍ୟ ନଥିଲି। କାରଣ ସ୍କୁଲରେ ମୁଁ ଫାଷ୍ଟ ହେଉ ନଥିଲି। ଫାଷ୍ଟ ପିଲାଟି ପରୀକ୍ଷାର ଅଳ୍ପଦିନ ପୂର୍ବରୁ ମରିଗଲା, ସେକେଣ୍ଡ ପିଲା ଟିକେ ଖରାପ କଲା। ମୋ ପାଇଁ ବିଧାତାଙ୍କର ଏ ଗୋଟିଏ ଷଡ଼ଯନ୍ତ୍ର। କଲେଜରେ ପଢ଼ିବା ଯଦି ମୋ ଭାଗ୍ୟରେ ଥା'ନ୍ତା ତେବେ ମୁଁ ନିଶ୍ଚୟ ଫାଷ୍ଟ ଡିଭିଜନ୍ ଟିଏ ପାଇଥାନ୍ତି। ସେତେବେଳେ ଫାଷ୍ଟ ଡିଭିଜନ୍‌କୁ ବହୁତ ମୂଲ୍ୟ ଦିଆଯାଉଥିଲା। ମୁଁ ବି ଫାଷ୍ଟ ଡିଭିଜନ୍ ପାଇଁ ଅଯୋଗ୍ୟ ନଥିଲି। ଯେଉଁ ପ୍ରାରବ୍ଧ ମାଇନର ପରେ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା ସେହି ଏବେ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରି ମତେ ଉପଯୁକ୍ତ ଫଳରୁ ବଞ୍ଚିତ କଲା। ମାତ୍ର ପ୍ରାରବ୍ଧ ତ କର୍ମ କରାଏ ନାହିଁ। ମୁଁ ଯଦି ପଢ଼ିବା ପାଇଁ ଚେଷ୍ଟା କରିଥାନ୍ତି, ପ୍ରାରବ୍ଧ ବାଧା ଦେଇନଥାନ୍ତା। ଆର୍ଥିକ ସମ୍ବଳ ମଧ୍ୟ ଯୋଗାଡ଼ ହୋଇପାରିଥାନ୍ତା। ମାତ୍ର ମୋର କାହିଁକି ଇଚ୍ଛାହେଲାନାହିଁ। ତାହା ପୁରୁଷକାର ଉପରେ ଭାଗ୍ୟର ବିଜୟ। ଫାଷ୍ଟ ଡିଭିଜନ୍ ନ ହେବାରୁ ମୁଁ ଚୋର ପରି ହେଲି। କାହାକୁ ମୁହଁ ଦେଖାଇବାକୁ ଇଚ୍ଛା ହେଲାନାହିଁ। ହେଡ୍‌ମାଷ୍ଟରଙ୍କ କଥା ପୂର୍ବରୁ କହିଛି। ତେବେ ପାଠ ନ ପଢ଼ି ଯେଉଁ ଭୁଲଟି ମୁଁ କଲି, ତାହା ମୋ ଜୀବନରୁ ସମସ୍ତ ସରସତା ହରଣ କରି ମୋତେ ହୀନମନ୍ୟତାର ଶିକାର କଲା। କି ଚାକିରି କରିଛି କେତେ ପଇସା ରୋଜଗାର କରୁଛି-ମୁଁ ଏହାକୁ ବିଶେଷ ମୂଲ୍ୟ ଦିଏନାହିଁ। ମାତ୍ର ମୋର ଶିକ୍ଷାଗତ ନ୍ୟୂନତା ମୋତେ ସର୍ବଦା ସଚେତନ କଲା ଯେ ମୁଁ ଗୋଟିଏ ସମାଜର ନିକୃଷ୍ଟ ମଣିଷ। ମୋ ଜୀବନ ଆରମ୍ଭ ବେଳେ ଗୋଟିଏ ମାଟ୍ରିକୁଲେଟ୍‌ର ମର୍ଯ୍ୟାଦା ନ୍ୟୂନ ନଥିଲା। କ୍ରମେ ଶିକ୍ଷାର ପ୍ରସାର ଘଟିଲା ଏବଂ ବହୁଳ ସଂଖ୍ୟାରେ ବି.ଏ, ଏମ୍.ଏ. ପାଶ୍ ଯୁବକ ସର୍ବତ୍ର ହାଉଯାଉ ହେଲେ। ମାଟ୍ରିକୁଲେଟ୍‌ର ଆଉ କୌଣସି ମର୍ଯ୍ୟାଦା ରହିଲାନାହିଁ। ସେ ଅଶିକ୍ଷିତ ଶ୍ରେଣୀରେ ଗଣାହେଲା। ଏପରିକି ମୋ ପରିବାରରେ ମଧ୍ୟ ମାଟ୍ରିକୁଲେଟ୍ ବିଷୟରେ ଅତି ହେୟ ବିଚାରରେ ମୋ ଉପସ୍ଥିତିରେ କଥା କୁହାଯାଏ। ମୁଁ ଜାଣେ ଆଧୁନିକ ବି.ଏ., ଏମ୍.ଏ. ପିଲାଙ୍କର ଭିତର ମୂଲ୍ୟ (Intrinsic value) କେତେ। ସେମାନେ ଉପର ମୂଲ୍ୟ (face value) ଅନୁସାରେ ଆସନ ଅକ୍ତିଆର କରୁଛନ୍ତି।

ମାଟ୍ରିକ୍ ପାଶ୍ ପରେ ମୁଁ ବରାବର ବରଜପୁରରେ ରହିଲି। ଥରେ ଗାଁକୁ ଯାଇ ଆମ ଘରବାରି ଭାଗବାଣ୍ଟ କରାଇଲି। ଏବେ ମୋର ଏକମାତ୍ର ଲକ୍ଷ୍ୟ କିପରି ଚାକିରିଟିଏ କରିବି ଏବଂ ଘରକଥା ବୁଝିବି। କି ଚାକିରି ବା ମୋତେ ମିଳିବ। ଇଂରେଜ ଅମଳ, ସରକାରୀ ଅଫିସ୍ ଅନୁଷ୍ଠାନ ଆଦି ବିଶେଷ କିଛି ନଥାଏ। D.H.S., D.P.I ରେଭିନ୍ୟୁ କମିଶନର ଅଫିସ୍ କିରାଣୀ ପାଇଁ I.A ପାସ୍ ଏବଂ ସଚିବାଳୟ ପାଇଁ B.A Pass ଦରକାର। କେବଳ କଲେକ୍ଟର ଅଫିସ୍ S.D.O ଅଫିସ୍ S.P ଅଫିସ୍ କିରାଣୀ ପାଇଁ ମୋର ଯୋଗ୍ୟତା ଥାଏ। ସେ ସବୁ ଚାକିରର ମୂଲ୍ୟ ସେତେବେଳେ ବହୁତ। ମୋ ପାଇଁ ତାହା ସ୍ୱପ୍ନ। ମାଇନର ସ୍କୁଲରେ ୧୫/୨୦ ଟଙ୍କାରେ ଶିକ୍ଷକ ଚାକିରି ପାଇଁ ଚେଷ୍ଟା କରିବାହିଁ ଉପଯୁକ୍ତ ବାଟ। ମୁଁ ଏହି ପ୍ରକାର ମାନସିକତାରେ ଥିବାବେଳେ ନୃସିଂହ ବେହୁରିଆଠାରୁ ଯେ କି ମୋ ସାଙ୍ଗରେ ଫାଷ୍ଟ ଡିଭିଜନରେ ପାସ୍ କରିଥିଲା ଚିଠିଟିଏ ପାଇଲି। ସେ ଲେଖିଥିଲା ରାମବାଗ୍ ମାଇନର ସ୍କୁଲରେ ଜଣେ ଶିକ୍ଷକ ଦରକାର। ଦରଖାସ୍ତ ଦେବା ଦରକାର ନାହିଁ। ତୁ ଏଠାକୁ ଆସିଲେ ସଙ୍ଗେ ସଙ୍ଗେ ନିଯୁକ୍ତି ପତ୍ର ଦିଆଯିବ। ଚିଠି ପାଇ ଉତ୍ସାହିତ ହୋଇ ମୁଁ ରାମବାଗ୍ ଗଲି। ଦେଖିଲି ବେହୁରିଆ ସେଠାରେ ନାହାନ୍ତି। ସେ କଲେଜରେ ନାମ ଲେଖାଇବା ପାଇଁ କଟକ ଗଲେଣି। ସେତେବେଳେ ସାରା ଓଡ଼ିଶାରେ ରେଭେନ୍ସା କଲେଜ ଏକମାତ୍ର କଲେଜ। ତା'ର ଚକ୍ରାନ୍ତ ଆଉ ମତଲବ୍ ମୁଁ ବେଶ୍ ବୁଝିପାରିଲି। ମାଟ୍ରିକ୍ ପରୀକ୍ଷା ପରେ ତା ସହିତ ମୋର ସାକ୍ଷାତ ଆଳାପ ହୋଇନାହିଁ। ସେ କିପରି ଜାଣିଲା ମୁଁ କଲେଜରେ ପଢ଼ିବା ପାଇଁ ଚେଷ୍ଟା କରୁନାହିଁ ବୋଲି। ମୋ ଠାରୁ ତାର ଅବସ୍ଥା ଅଧିକ ଶୋଚନୀୟ। ତା ବାପା ଗୋଟିଏ ମୂଲିଆ। ମୁଁ ପଢ଼ିବାକୁ ଇଚ୍ଛା କରିଥିଲେ ଅର୍ଥ ସମସ୍ୟା ହୋଇନଥାନ୍ତା। ଏ ବିଶ୍ୱାସ ମୋର ଥିଲା। ସେ ସେହି ସ୍କୁଲରୁ ବୃତ୍ତି ପାଇଥିଲା। ସେକ୍ରେଟେରିଙ୍କ ପ୍ରଭାବ ତା ଉପରେ ଅତ୍ୟଧିକ ଥିଲା। ନାମ ଲେଖା ଖର୍ଚ୍ଚ ଉଠାଇବା ପାଇଁ ପରୀକ୍ଷା ପରେ ସେ ଏଠାରେ ଶିକ୍ଷକତା କରୁଥିଲା। ସେକ୍ରେଟେରୀ ତାକୁ ଛାଡ଼ିବାକୁ ଚାହିଁଲେ ନାହିଁ। କହିଲେ ଏଇଠି ଘରୋଇ ଭାବରେ ପରୀକ୍ଷା ଦେଇ I.A, B.A Pass କରିବ। ଗୋଟିଏ ଭଲ ଶିକ୍ଷକ ତାଙ୍କୁ (ମୋତେ) ଯୋଗାଇଦେବ କହି ସେ ଖସିଗଲା। ଏବଂ ମୋ ପାଖକୁ ଚିଠିଟି ଲେଖିଲା। ସାକ୍ଷାତ ହେଲେ କାଳେ ଆଲୋଚନା କରି ମୁଁ ମନ ବଦଳାଇଦେବି। ତା'ର ଏକମାତ୍ର ଉଦ୍ଦେଶ୍ୟ ମତେ କଲେଜ ପଢ଼ାରୁ ନିବୃତ୍ତ କରିବା। ପରିଚିତ ଲୋକ ନିମ୍ନସ୍ତରରେ ରହିଲେ ସିନା ନିଜ ବଡ଼ ପଣର ସ୍ୱାଦ ମିଳିବ। ସମସ୍ତେ ସମ ସ୍ତରର ହୋଇଗଲେ କିଏ କାହାକୁ କାହିଁକି ପଚାରିବ ? ଏ ସମ୍ବନ୍ଧରେ ଆଉ ଗୋଟିଏ ଘଟଣା ଏଠାରେ ଉଲ୍ଲେଖନୀୟ।

ମୁଁ ପରେ ଯାଜପୁର S.D.O ଅଫିସ୍‌ରେ କିରାଣୀ ଚାକିରିରେ ଯୋଗଦେଲି। ସାଢ଼େତିନିଫୁଟ ଓସାରର ଖଟଟିଏ ପକାଇ ଗୋଟିଏ ସ୍କୁଲ ପିଲା ମେସ୍‌ରେ ରହୁଥିଲି। ବେହୁରିଆ କଲେଜରେ ପଢୁଥିବା ବେଳେ ଯାଜପୁର ଆସିଲେ ମୋ ପାଖରେ ରହେ। ୟା ଭିତରେ ପଇସା ସଂଗ୍ରହ କରିବା ପାଇଁ ଯାଜପୁର ହାଇସ୍କୁଲରେ ଶିକ୍ଷକତା ମଧ କରେ। ମୋ ପାଖରେ ମାସ-ମାସ ଧରି ରହେ। ବି.ଏ. ପରୀକ୍ଷା ଶେଷରେ ମଧ ଆସି ମୋ ପାଖରେ ଥିଲା। ଏବଂ ସ୍କୁଲରେ ଶିକ୍ଷକତା କରୁଥିଲା। ଏହି ସମୟରେ ଆଳାପ କାଳରେ ମତେ କହିଲା- ''ତୁ ପଢ଼ା ବନ୍ଦକରି ଭୁଲ କଲୁ।'' ତା ଠାରୁ ଏକଥା ଶୁଣି ମୁଁ ଅବାକ୍ ହେଲି। ତାକୁ କିଛି ନ କହି ମନରେ ଭାବିଲି- କେତେ ଧୂର୍ତ୍ତ ଆଉ ସ୍ୱାର୍ଥପର ଏ ଲୋକଟି। ତା କାମ ସରିଗଲା ପରେ ଏ ନୀତିବାକ୍ୟ ମତେ ଶୁଣାଇଲା। କାମ ଆରମ୍ଭ ବେଳେ ଏ ନୀତି ବାକ୍ୟ ତାହାର କେଉଁଠି ଥିଲା। ଯାହା ଭଲ, ତାହା ସଦାବେଳେ ଭଲ। କେଉଁଟା ଭଲ କେଉଁଟା

ମନ୍ଦ, ସେ କର୍ତ୍ତବ୍ୟ ଜାଣିବା ପାଇଁ ଭଗବାନ ସମସ୍ତଙ୍କୁ ବିବେକ ଦେଇଛନ୍ତି। କିନ୍ତୁ ସେହି ଭଲ କଥାଟି ପ୍ରୟୋଗ କରିବା ବା ପ୍ରକାଶ କରିବା ପାଇଁ ଯେଉଁ ଲୋକ ନିଜର ସ୍ୱାର୍ଥକୁ ଆଖି ଆଗରେ ରଖି ସୁବିଧା-ସୁଯୋଗ ଖୋଜେ, ତାହାଠାରୁ ମୋ ବିଚାରରେ ଅମଣିଷ ଆଉ କେହିନାହିଁ।

ତେବେ ଯାହାହେଉ, ଲୋକଟି ଭାଗ୍ୟବାନ୍। ବି.ଏ. ପାସ୍ ପରେ ଓ.ଏ.ଏସ୍ ଚାକିରି ପାଇଲା। ପରେ ଆଇ.ଏ.ଏସ୍‌କୁ ଉନ୍ନୀତ ହେଲା, କମିଶନର ପଦ ଅଳଙ୍କୃତ କଲା। ସେ ଏତେବଡ଼ ଐଶ୍ୱର୍ଯ୍ୟଶାଳୀ ଓ ପ୍ରତିପତ୍ତି ସମ୍ପନ୍ନ ହେଲେ ମଧ୍ୟ ମୁଁ ତାହା ସହିତ ବିଶେଷ ଯୋଗସୂତ୍ର ସ୍ଥାପନ କରିନାହିଁ। ମୋର ବିଚାର ତା ସହିତ ମୋର ବନ୍ଧୁତା ଅସମ ବନ୍ଧୁତା। ଏହା ସାନ ପକ୍ଷରେ କ୍ଷତିକାରକ ହୋଇଥାଏ। ତେଣୁ ଏହା ବର୍ଜନୀୟ। ମୋର ''ଶୁଭଗ' ବହିରେ ''ଅସମ ବନ୍ଧୁତା'' ଶୀର୍ଷକ କବିତାର ପଂକ୍ତିଟିଏ ଉଦ୍ଧାର କଲି।

ସମସ୍ତରେ ସିନା ବନ୍ଧୁତା ସୁନ୍ଦର
ଉଭୟଙ୍କୁ ସୁଖମୟ
ବିପଦ ମୁଣ୍ଡେଇ ଅସମ ବନ୍ଧୁତା
ରକ୍ଷଣେ ନ ରହୁ ଲୟ।

ବୋର୍ଡ ଅଫିସ୍‌ରେ ଚାକିରି କରୁଥିବା ବେଳେ ଜେନା ସାହେବଙ୍କର ଅବସର ପରେ ସହକର୍ମୀଙ୍କର କୋପ ଦୃଷ୍ଟି ମୋ ଉପରେ ପଡ଼ିଲା। ସେମାନେ ମୋର ସର୍ବଦା ଅଫିସ୍ ଆସ୍ଥାନକୁ ବିରୋଧ କଲେ। ମୋତେ ବାହାରକୁ ଯିବାପାଇଁ ଅର୍ଡର ବାହାରିଲା। ସେ ସ୍ଥାନକୁ ନ ଯାଇ ଅନ୍ୟସ୍ଥାନ ଦେବାପାଇଁ ମୁଁ ଆପତ୍ତି କଲି। ଅଫିସର ମୋ କଥା ଶୁଣିଲେ ନାହିଁ। ମୁଁ ବେହୁରିଆକୁ କହି ସେ ଆଦେଶ ନାକଚ କରାଇଥିଲି। ଏତିକି ମାତ୍ର ମୁଁ ତାହାର ସାହାଯ୍ୟ ନେଇଥିଲି।

ମୁଁ ରାମବାଗ୍‌ରେ ସାତଦିନ ରହିଲି, ଶ୍ରେଣୀରେ ଅଧ୍ୟାପନା କଲି। ସେକ୍ରେଟାରୀ ମୋ ଅଜାଣତରେ ପଛ ରୁମ୍‌ରେ ବସି ମୋର ଅଧ୍ୟାପନା ଶୈଳୀର ପରୀକ୍ଷା ନେଲେ। ସେକ୍ରେଟାରୀଙ୍କର ମାତ୍ରାଧିକ ଆଧିପତ୍ୟ ମତେ ଭଲ ଲାଗିଲା ନାହିଁ। ଜିନିଷପତ୍ର ଆଣିବା ବାହାନାରେ ଘରକୁ ଆସିଲି। ଆଉ ଗଲିନାହିଁ। କିଛିଦିନ ପରେ ଶୁଣିଲି ପଦ୍ମନାଭ ଜେନା ସେଠାରେ ହେଡ୍‌ମାଷ୍ଟର ହୋଇ ଜଏନ୍ କରିଛନ୍ତି। ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥିବାବେଳେ ସେ ଏକାଦଶ ଶ୍ରେଣୀରେ ପଢୁଥିଲେ ଏବଂ ହଷ୍ଟେଲରେ ମନିଟର ଥିଲେ। ସେ ବଡ଼ ମେଧାବୀ ଛାତ୍ର ଥିଲେ। ମାତ୍ର ଭାଗ୍ୟ ତାଙ୍କ ଜୀବନରେ ବିପର୍ଯ୍ୟୟ ଘଟାଇଲା। ସେ କାହାଣୀ ଏଠାରେ ବର୍ଣ୍ଣନା କରିବା ଅନାବଶ୍ୟକ। ତାଙ୍କ ସ୍କୁଲରେ ଶିକ୍ଷକତା କରିବା ପାଇଁ ମୁଁ ଇଚ୍ଛୁକ ବୋଲି ତାଙ୍କୁ ଚିଠି ଲେଖିଲି। ସେ ତତ୍‌କ୍ଷଣାତ୍ ମୋତେ ଯିବା ପାଇଁ ଜଣାଇଲେ। ମୁଁ ଗଲି ଏବଂ ସେଠାରେ ୪ମାସ ଗ୍ରୀଷ୍ମ ଛୁଟି ପର୍ଯ୍ୟନ୍ତ ରହିଲି। ଗ୍ରୀଷ୍ମ ଛୁଟିରେ ଘରକୁ ଆସିଲି। ଗ୍ରୀଷ୍ମ ଛୁଟିରେ ଦରମା ଦେବେନାହିଁ ବୋଲି ଆସିଲାବେଳେ ଶୁଣି ଆସିଥିଲି। ତେଣୁ ପରେ ସେଠାକୁ ଆଉ ଯିବାକୁ ଇଚ୍ଛା ହେଲାନାହିଁ।

ଏହି ସମୟରେ ଟାଟାରୁ ଭିଣୋଇଙ୍କର ଟେଲିଗ୍ରାମ୍ ପାଇଲି। ମୋ ପାଇଁ ଚାକିରି ବ୍ୟବସ୍ଥା ହୋଇଛି। ଶୀଘ୍ର ଯିବାପାଇଁ ତାରବାର୍ତ୍ତା ପଠାଇଛନ୍ତି। ସ୍ୱାଧୀନ ଭାବରେ ଦୀର୍ଘ ରେଳଯାତ୍ରାର ଅଭିଜ୍ଞତା ମୋର ନାହିଁ। ପରନ୍ତୁ ଯୁଦ୍ଧ

ସମୟ । ଟ୍ରେନ୍‌ସବୁ ବ୍ଲାକ୍ ଆଉଟ୍ ହେଉଥାଏ । କିନ୍ତୁ ମୋତେ ଯିବାକୁ ହେବ । ବହୁ କଷ୍ଟ ସ୍ୱୀକାର ପୂର୍ବକ ଟାଟାରେ ପହଞ୍ଚିଲି । ତହିଁ ଆରଦିନ ଲେବର ବୁରୋରେ ହାଜିରା ଦେଲି । କମ୍ପାନୀର ନିୟମ, କର୍ମଚାରୀର ନିର୍ଦ୍ଦିଷ୍ଟ ବର୍ଷ ଚାକିରି ହୋଇଗଲେ ପୁଅ, ଭାଇ ବା ଯୋଇଁ ଏ ତିନିଙ୍କ ଭିତରୁ ଜଣକୁ ଚାକିରି ଦିଏ । ମୋତେ ଭାଇ ହିସାବରେ ଚାକିରି ଦେବାପାଇଁ ଭିଣୋଇ ଦରଖାସ୍ତ କରିଥିଲେ । ମୋର ସାକ୍ଷାତକାର ନିଆଗଲା । ଭିଣୋଇ ବାଞ୍ଛାନିଧି ମହାନ୍ତିଙ୍କ ପୁଅ ଏବଂ ମୁଁ କ୍ଷେତ୍ରବାସୀ ମହାନ୍ତିଙ୍କ ପୁଅ ହୋଇଥିବାରୁ ଭାଇ ନୁହେଁ ବୋଲି ପ୍ରମାଣିତ ହୋଇଗଲା । ମୋତେ ତ ଚାକିରି ମିଳିବ ନାହିଁ । ମାତ୍ର ଭିଣୋଇଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବ । ଭିଣୋଇ ଡରିଗଲେ, ମୋତେ ବି ଭଲ ଲାଗିଲା ନାହିଁ । ମୁଁ ଆଠଦିନ ପରେ ପଳାଇ ଆସିଲି । ଟାଟା ଚାକିରି ଆଶା ବିଲୁପ୍ତ ହେଲା । ପରେ ପୋଷ୍ଟାଲ ଡିପାର୍ଟମେଣ୍ଟକୁ ଦରଖାସ୍ତ ପଠାଇବା ପାଇଁ ଯାଜପୁର ଗଲି । ଏହି ସମୟରେ ମୋର ଶିକ୍ଷକ କେ. ଭୀମାରାଓ ପଟ୍ଟନାୟକଙ୍କ ସହ ଦେଖାହେଲା । ସେ ସ୍ୱତଃ ପ୍ରବୃତ୍ତ ହୋଇ ମୋ ପାଇଁ ଚାକିରି ଯୋଗାଡ଼ କରିବା ପାଇଁ କହିଲେ ଏବଂ ମୋତେ ଯାଜପୁରରେ ମାସଟିଏ ରହିବା ପାଇଁ କହିଲେ । ମୁଁ ସେଦିନ ବରଜପୁର ଫେରି ଆସି ତହିଁ ଆରଦିନ ଯାଜପୁର ଗଲି । ସାର୍ ମୋର ରହିବା, ଖାଇବା ଏବଂ ଖର୍ଚ୍ଚ ପାଇଁ ପଇସାର ବ୍ୟବସ୍ଥା କରିଦେଲେ । ପୂର୍ବ କଥିତ ସୁକିନ୍ଦା ରଜା ସେତେବେଳକୁ ହଷ୍ଟେଲ ଛାଡ଼ି ଗୋଟିଏ ଘରଭଡ଼ା ନେଇ ରହୁଥିଲେ । ପଟ୍ଟନାୟକ ସାର୍ ତାଙ୍କର ଅଭିଭାବକ ଥିଲେ । ମୋତେ ତାଙ୍କ ଘରେ ରଖାଇଲେ । ପାଖରେ ରହୁଥିବା ଗୋଟିଏ ପିଲାକୁ ଟିଉସନ୍ କଲି ଏବଂ ସନ୍ନିକଟ ମେସ୍‌ରେ ଖାଇଲି । ଏହି ପ୍ରକାର ବ୍ୟବସ୍ଥାରେ ମୁଁ ରହିଲି । ଏସ୍.ଡି.ଓ ଅଫିସ୍‌ରେ ଯୋଗାଣ ସେକ୍‌ସନ୍‌ରେ ଗୋଟିଏ କିରାଣୀ ଚାକିରି ଖାଲି ଥିବାର ଖବର ପାଇ ସାର୍ ମତେ ଦରଖାସ୍ତ ଦେବାପାଇଁ କହିଲେ । ଏଥିପାଇଁ ଗୋଟିଏ ସଂକ୍ଷିପ୍ତ ପରୀକ୍ଷା ହେଲା । ପରୀକ୍ଷାରେ ମୁଁ ଫାଷ୍ଟ ହେଲି । ମାତ୍ର ସେକେଣ୍ଡ ପିଲାକୁ ଚାକିରି ଦିଆଗଲା । ପରେ ଆଉ ଗୋଟିଏ ପୋଷ୍ଟ ଆସିଲା । ହେଡ କ୍ଲର୍କର ଷଡ଼ଯନ୍ତ୍ର ବଳରେ ସେଥିରେ ମୋର ହେଲାନାହିଁ । ହେଡ୍‌କ୍ଲର୍କ ସହିତ ସେକେଣ୍ଡ ପିଲାର କ'ଣ ବୈରଭାବ ଥିଲା । ତେଣୁ ସେ ଜଏନ୍ କରିବା ପାଇଁ ମନାକରିଦେଲା । ଶେଷରେ ମୋ ଚାକିରି ମତେ ମିଳିଲା ଏବଂ ମୁଁ ୧୯୪୪ ମସିହା ଜାନୁଆରୀ ୧୩ ତାରିଖରେ ଜଏନ୍ କଲି । ମାଟ୍ରିକ୍ ପାସ୍‌କୁ କିରାଣୀ ଚାକିରି ତ ମିଳିଗଲା । ତେଣୁ ମୋର ଚାକିରି ଖୋଜା ଧନ୍ଦା ଓ ମାନସିକ ଅସ୍ଥିରତାର ଶେଷ ହେଲା ।

ମୁଁ ଗୋଟିଏ ମେସ୍‌ରେ ରହି ମୋ ଚାକିରି ତୁଲାଇଲି । ବରଜପୁର ଆଉ ଗଲିନାହିଁ । ଗାଁ ସହିତ ସମ୍ବନ୍ଧିତ ହୋଇଗଲି । ମୋର ସାମାନ୍ୟ ଖର୍ଚ୍ଚ ବାଦ୍ ଅବଶିଷ୍ଟ ଟଙ୍କା ଭାଇଙ୍କ ପାଖକୁ ପଠାଇଦିଏ । ଘରେ ଭାଇ, ବୋଉ, ସାନଭାଇ, ଭଉଣୀ ଚାରିଜଣ । ଭାଇ ବି ସେତେବେଳକୁ ଦଫାଦାର କାମରେ ରହିଲେ । ମନ ଟିକେ ଆଶ୍ୱସ୍ତ ହେଲା । ତେବେ ବରଜପୁର ସହିତ ସମ୍ପର୍କ ଛିନ୍ନ କରିବା କି ପ୍ରକାର ମାନସିକତାରୁ ଉଦ୍ଭୁତ, ମୁଁ ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ମୋର ଭଉଣୀ ବହୁ ପୂର୍ବରୁ ଟାଟା ଚାଲି ଯାଇଥିଲା । ତା'ର ଶାଶୁ ବୁଢ଼ୀ ଏକାଟିଆ ରହୁଥିଲେ । ସେଥିପାଇଁ ବୋଧେ ମୋର ଯିବା ଆସିବା ପାଇଁ ମନ ହେଲାନାହିଁ । କିନ୍ତୁ ସେହି ବୁଢ଼ୀଙ୍କ ସ୍ନେହ ଆଦର ଲାଭ କରି ସେଠାରେ ରହି ପାଠପଢ଼ା ଶେଷ କଲି । ଏବେ ମଝିରେ ମଝିରେ ଯାଇ ତାଙ୍କୁ ଦେଖା କରିବାର ଆବଶ୍ୟକତା ପରିଚାୟକ । କିନ୍ତୁ ସେ ଏତେ ଉଦାର ଓ ଭଲ ଲୋକ ଯେ ସେ କେବେ ଦୋଷାରୋପ କରିନାହାନ୍ତି କିମ୍ବା ମୋ ଠାରୁ କେବେ କିଛି ଚାହିଁନାହାନ୍ତି । ଥରେ ମୁଁ ତାଙ୍କ ପାଖକୁ ଚାରିଖଣ୍ଡ ନିତିପିନ୍ଧା ଶାଢ଼ୀ ପଠାଇଥିଲି । ସେ ତାକୁ

ରଖିଲେ ଏବଂ ବାର୍ତ୍ତା ପଠାଇଲେ ଯେ, ମୋର ଏସବୁ କରିବା ଦରକାର ନାହିଁ। ମୋ ସମସ୍ୟା ମୁଁ ତୁଲାଇବା ଦରକାର।

ଏହି ସମୟରେ ଆମ ଗାଁର ଦୁଇଜଣ ପିଲା ମୋ ପାଖରେ ରହି ଯାଜପୁରରେ ପଢ଼ାପଢ଼ି କରିବାକୁ ଚାହିଁଲେ। ମୁଁ ତାଙ୍କୁ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ମୋ ପାଖରେ ମେସ୍‌ରେ ରଖାଇଲି। ତାଙ୍କୁ ପଢ଼ାଇବାରେ ବହୁତ ପରିଶ୍ରମ କଲି, କିନ୍ତୁ ସେ ଦୁଇଟିଯାକ ଏକ୍‌ଦମ୍ ଗଧ। ପାଠ କିଛି ଗ୍ରହଣ କରିବାର ଶକ୍ତି ବା ମାନସିକତା ତାଙ୍କର ନଥିଲା। ବୋଧେ ନବମ ଶ୍ରେଣୀରୁ ସେମାନେ ପାଠ ଛାଡ଼ି ପଳାଇଲେ। ସେମାନଙ୍କଠାରୁ ମୁଁ କିଛି ପଇସା ପାଉଥିଲି, ଟିଉସନ୍ ଫି ହିସାବରେ ନୁହେଁ। ମୋତେ ସାହାଯ୍ୟ ସ୍ୱରୂପ ତାଙ୍କ ବାପା ମତେ ଦିଅନ୍ତି। ସେମାନେ ଖୁବ୍ ସ୍ୱଚ୍ଛଳ ଅବସ୍ଥାର ଲୋକ। ଏହି ପଇସାରେ ମୁଁ ଯୋଗାଡ଼ କରି ଭାଇଙ୍କର ବାହାଘର ୧୯୪୬ ମସିହାରେ କରିଦେଲି। ଏଇଟା ମୋର ଗୋଟାଏ ବଡ଼ ଚିନ୍ତାର ବିଷୟ ଥିଲା।

ଏହି ସମୟରେ ମୋର ସାନଭାଇକୁ ବୈରୀ ସପ୍ଲାଇ ସୁପରଭାଇଜରଙ୍କ ପାଖରେ ପିଅନ ପୋଷ୍ଟରେ ନିଯୁକ୍ତିର ବ୍ୟବସ୍ଥା କରି ପାରିଥିଲି। ମାତ୍ର ଏହାର ସୁଫଳ ବେଶୀଦିନ ଉପଲବ୍ଧ ହେଲାନାହିଁ। ସେହି ବିଭାଗରେ ଷ୍ଟାଫ୍ ରିଟ୍ରେଞ୍ଚମେଣ୍ଟ ହେଲା। ସେଥିରେ ସେ ଚାକିରି ହରାଇଲା। ପ୍ରାୟ ଦେଢ଼ବର୍ଷ ଚାକିରିରେ ଥିଲା। ତାହାପରେ ସେ ବୈରୀରେ ଥିବା ରାଇସ୍‌ମିଲ୍‌ରେ କାମ କଲା।

ଅପର ଡିଭିଜନ୍ କ୍ଲର୍କକୁ ପ୍ରମୋଶନ୍ ଦେଇ ମୋତେ ବାଙ୍କି ବଦଳି କରାଗଲା। ୪୭ ମସିହା ଡିସେମ୍ବର ମାସରେ ମୁଁ ସେଠାରେ ଜଏନ୍ କଲି। ମତେ ଗୋଟାଏ ସରକାରୀ କ୍ୱାର୍ଟର (ଅବଶ୍ୟ ଚାଳଖଞ୍ଜାଘର) ମିଳିଗଲା। ମୁଁ ସେ ଘରେ ରହିଲି। ଅଫିସ୍ ପିଅନ୍ ମତେ ରୋଷେଇ କରି ଦେଉଥିଲା। ବାଙ୍କି କଟକରୁ ପ୍ରାୟ ୫୦ କି.ମି. ଦୂର ମହାନଦୀ କୂଳରେ ଅବସ୍ଥିତ। ବର୍ଷାଦିନେ ଟ୍ରେନ୍‌ରେ ବାରଙ୍ଗ ଯାଇ ସେଠାରୁ ବସ୍‌ରେ ଯିବାକୁ ହୁଏ। ଖରାଦିନେ କାଠଯୋଡ଼ି ନଦୀରେ fair weather road ହୁଏ। ବସ୍ ସିଧା କଟକରୁ ବାଙ୍କି ଯାଏ। ଏବେ କାଠଯୋଡ଼ି ପୋଲ ହେବାଦ୍ୱାରା ସିଧା ବସ୍ ବର୍ଷସାରା ଯା'ଆସ କରେ। ଏ ଯାଗାଟି ଭାରି ସ୍ୱାସ୍ଥ୍ୟକର। ସେତେବେଳେ ଏହା ସବ୍‌ଡିଭିଜନ୍ ନଥିଲେ ମଧ୍ୟ ସବ୍‌ଡିଭିଜନ୍ ପରି କାମ ଚାଲୁଥିଲା। ଏଠାରେ ଶାସନ ମୁଖ୍ୟଙ୍କୁ ଏସ୍.ଡି.ଓ ନ କହି ଅଫିସର ଇନ୍‌ଚାର୍ଜ କୁହାଯାଉଥିଲା। ମାଛ ଆଉ ଗୁଡ଼ ପାଇଁ ଏହାର ପ୍ରସିଦ୍ଧି ଥିଲା। ଏଠାରେ ପ୍ରସିଦ୍ଧ ଚର୍ଚ୍ଚିକା ମନ୍ଦିର ଅବସ୍ଥିତ। ଲୋକମାନେ ଭାରି ଶାନ୍ତିପ୍ରିୟ ଓ ଆଇନ୍ ଅନୁଗତ। ଏବେ ଏହା ଗୋଟିଏ ପୂର୍ଣ୍ଣାଙ୍ଗ ସବ୍‌ଡିଭିଜନ୍ ହୋଇଛି। ବାଙ୍କିରେ ଥିଲାବେଳେ ଧାର ଉଧାର କରି ଯଥାତଥା ମୋ ସାନ ଭଉଣୀର ବାହାଘର ୪୯ ମସିହାରେ କରିଦେଲି। ୟା ପରେ ମୋ ବାହାଘର ପ୍ରସ୍ତାବ ଆସିଲା। ନିକଟସ୍ଥ ସାଲେପୁର ଗ୍ରାମର ଜଗଦୀଶ୍ ଦାସ ତାଙ୍କ ଝିଅ ପାଇଁ ପ୍ରସ୍ତାବ ଆଣିଲେ। ତାଙ୍କ ଭଉଣୀ ଘର ଆମ ସାହିରେ। ସେ ଆମ ଘରକୁ ଜାଣନ୍ତି। ହେଲେ ତାଙ୍କ ଭଉଣୀଘର ଲୋକେ ଦରିଦ୍ରତା ଆଳରେ ବାହାଘର ଏଠାରେ ନ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତାଇଲେ। ସେ କହିଲେ ''ଖାନ୍‌ଦାନ୍ ଘର, କର୍ପୂର ଯାଇଛି, କନା ପଡ଼ିଛି,'' ପିଲାଟି ତ ଚାକିରି କରିଛି। ମୁଁ ଜମି ୨/୪ ମାଣ କରିଦେବି। ଏଇଠି ବାହାଘର କରିବି।'' କିନ୍ତୁ ଦରିଦ୍ରତା ଯୋଗୁଁ ମୁଁ ବିବାହ ପାଇଁ ଆଦୌ ରାଜି ନଥିଲି। ଜଗଦୀଶ ଦାସ ଆମ ସାହିର ତାଙ୍କ ଭଣଜା ନଟ ଭାଇଙ୍କୁ ମୋ ସହ କଥାଭାଷା କରିବା ପାଇଁ ବାଙ୍କି ପଠାଇଲେ। ମୁଁ ତାଙ୍କ ଦ୍ୱାରା

ପ୍ରଭାବିତ ହୋଇନାହିଁ। ବାଙ୍କିରେ ମୋର ଜଣେ ବନ୍ଧୁ କଥଣ କିପରି ମୋତେ ବିବାହ ପାଇଁ ରାଜି କରାଇଦେଲେ। ନଟଭାଇ ମୋର ସମ୍ମତି ନେଇ ଫେରିଲେ। ବାହାଘର ୧୯୫୦ ମସିହା ମାର୍ଚ୍ଚ ମାସ ୧୧ ତାରିଖରେ ସମ୍ପନ୍ନ ହେଲା। ଝିଅଟି ନାମ ଜାନକୀ, ଡାକନାମ ଶୁକ। ବୟସ ୧୭କି ୧୮। ମୋ ଠାରୁ ୮/୯ ବର୍ଷ ସାନ। ବାହାଘର ପୂର୍ବରୁ ମୁଁ କିମ୍ବା ଆମ ଘର ଲୋକ କେହି ତାଙ୍କୁ ଦେଖିନଥିଲେ। ବାହାଘର ବେଳେ ଟିକେ ମୋଟକା ସୋଟକା ଥିଲେ। ରଙ୍ଗ ଗହମ ରଙ୍ଗ। ମୁହଁରେ ବସନ୍ତ ଚିହ୍ନ ଅସ୍ପଷ୍ଟ ହେଲେ ମଧ୍ୟ ନିରୀକ୍ଷଣ କଲେ ବସନ୍ତ ହୋଇଥିଲା ବୋଲି ଜଣାଯିବ। ଆମ ସାହିର ଗୋଟିଏ ବୁଢ଼ୀ ମନ୍ତବ୍ୟ କଲେ ପୁଅକୁ ବୋହୂ ହେଲାନାହିଁ। ବାସର ରାତିରେ ମୁଁ ଆଡୁସାଡୁ କ'ଣ ତାଙ୍କୁ କହିଲି। ସେ ମନ କଷ୍ଟକଲେ। ପରେ ଜାଣିଲି ତାଙ୍କ ବୋଉଙ୍କ ପାଖକୁ ଚିଠିରେ ଏସବୁ କଥା ଲେଖିଥିଲେ।

ମୁଁ ବାହାଘରକୁ ୨୫ଦିନ ଛୁଟି ନେଇ ଆସିଥିଲି। ଛୁଟି ଶେଷରେ ବୋଉ ଓ ସ୍ତ୍ରୀଙ୍କୁ ନେଇ ବାଙ୍କି ଗଲି। ଆମର ଦିନ ବେଶ୍ ଆନନ୍ଦ ଉଲ୍ଲାସ ଭିତରେ ଗଡ଼ିଚାଲିଲା।

ଶ୍ୱଶୁର ମହୋଦୟ ତାଙ୍କ କଥା ଅନୁସାରେ ଜମି କିଣିବା ପାଇଁ ଭାଇଙ୍କ ପାଖକୁ ଟଙ୍କା ପଠାଇଲେ। ଭାଇ ଯୋଗାଡ଼ ଯନ୍ତ୍ର କରି ଅଢ଼େଇ ଏକର ଜମି ଶ୍ୱଶୁରଙ୍କ ନାଁରେ କିଣିଲେ। ଏବଂ ଭାଗ ଚାଷର ବ୍ୟବସ୍ଥା କରିଦେଲେ। ଜମିର ଉତ୍ପନ୍ନ ଫସଲ ସେ ବର୍ଷ ପରେ ବର୍ଷ ନେଇ ଚାଲିଲେ। ଆମକୁ ଜମି ହସ୍ତାନ୍ତର କରିବାର ନାମ ଗନ୍ଧ ଶୁଣା ଗଲାନାହିଁ। ବହୁବର୍ଷ ପରେ ଭାଇ ତାଙ୍କୁ ଏ ବିଷୟରେ ଗୋଟିଏ ଚିଠି ଲେଖିଲେ। ସେଥିରେ ବି ସେ କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ। ଭାଇଙ୍କୁ ଯା ତା ଆଗରେ ଗାଳିଗୁଲଜ କଲେ। ବହୁଦିନ ପରେ ଆମ ଅଗୋଚରରେ ସେ ଜମିକୁ ବିକ୍ରୟ କରିଦେଲେ। ଏଇ ହେଲା ଜଗଦୀଶ୍ ଦାସଙ୍କର ବଚନବଦ୍ଧତା ଓ ଝିଅ-ଜ୍ୱାଇଁ ପ୍ରତି ବ୍ୟବହାର। ଏସବୁ ଘଟଣା ଜାଣିଲେ ମଧ୍ୟ ମୋ ମନରେ ସାମାନ୍ୟ ଦୁଃଖ ହୋଇନାହିଁ। ସ୍ତ୍ରୀଙ୍କର ବି ଏ ଜମି ସହିତ କୌଣସି ସମ୍ବନ୍ଧ ନଥିଲା। ସେ କେବେ ଏ ବିଷୟରେ କିଛି କହନ୍ତି ନାହିଁ। ମୁଁ ବି ଚାହେଁନାହିଁ ପର ସମ୍ପତ୍ତିରେ ପାଣି ପାଣିଆ ହେବାକୁ। ମୋ ବିଚାରରେ ଭଗବାନ୍ ନ୍ୟାୟରେ ଯେତିକି ଦେଉଛନ୍ତି ସେତିକିରେ ବଞ୍ଚିବା ହିଁ ଠିକ୍ ବଞ୍ଚିବା। ପୁଣି ଯାହାର ଦାନ ଦେବାର ଶକ୍ତି ନାହିଁ, ତାହାଠୁ ଦାନ ନେବା ପାପ। ସେ ବି ଆମପରି ଗରିବ। ଚାକିରି କରି ଚଳୁଥିଲେ। ଅବସର ନେଲେ ପେନ୍‌ସନ୍ ନାହିଁ। ସେ କି ଦାନ ଦେବେ ? ଆମକୁ ତାହା ପ୍ରାପ୍ତ ନ ହୋଇଛି ଭଲ ହୋଇଛି। ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ। ତେବେ ମୋ ଭାଇ ଅକାରଣରେ ଅପମାନିତ ହେଲେ ତାହାହିଁ ମତେ ବାଧିଲା। ତାଙ୍କର ବୁଦ୍ଧିହୀନତାର ଦଣ୍ଡ ସ୍ୱରୂପ ତାଙ୍କୁ ଏ ଅପମାନ ମିଳିଲା। ଜମି ବୋହୂ ନାମରେ ବା ଭାଇ ନାମରେ ନ କିଣି ଶ୍ୱଶୁରଙ୍କ ନାମରେ କାହିଁକି କିଣିଲେ ଏହି ହେଲା ତାଙ୍କ ଦୋଷ। କଳି ଯୁଗରେ ଭଲ ବାଟରେ ଗଲେ ଆଗ ତୁମ ପାଇଁ ଦଣ୍ଡ ଥୁଆ। ପରେ କେତେବେଳେ ତୁମେ ଭଲ ବାଟେ ଯିବାର ମୂଲ୍ୟ ପାଇପାର।

## ।। ସଂସାରୀ ଜୀବନ ।।

ଦିନ ଗଡ଼ିଚାଲିଲା। ଆମ ଦୁହିଁଙ୍କ ଭିତରେ ଆନନ୍ଦ କି ନିରାନନ୍ଦ, ତା ମନର ଖଟାଭାବ ମୃତ କି ଜୀବିତ- ତାହାର ଆଭାସ କିଛି ନଥିଲା। ୫୧ ମସିହା ଏପ୍ରିଲ ୩ ତାରିଖ ରାତି ୯ଟାରେ ମୋର ପ୍ରଥମ ସନ୍ତାନ ପୁଅ ଭୂମିଷ୍ଠ ହେଲା। ଏହାର କିଛି ଦିନ ପରେ ସ୍ତ୍ରୀ କହିଲେ ବାଙ୍କୁଲି ଜନ୍ମ ନ ହୁଏ-ମୁଁ ସଂସାରରେ ନ ରହେ। ଏ କଥାରୁ ମୁଁ ବୁଝିଲି ସେ ମତେ ବହୁତ ଅବିଶ୍ୱାସର ସହ ଦେଖୁଥିଲେ। କିନ୍ତୁ ମୁଁ ସୂଚାଇ ଦେବାକୁ ଚାହେଁ ଯେ ମୁଁ ଆଦୌ ସେ ପ୍ରକାର ଅସ୍ଥିରଚିତ୍ତ, ଭାବ ବିହ୍ୱଳ, କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ଲୋକନୁହେଁ। ଯାହାକୁ ଦଶଦିଗପାଳ ଓ ଅଗ୍ନିକୁ ସାକ୍ଷୀ କରି ସ୍ତ୍ରୀରୂପେ ଗ୍ରହଣ କରିଛି-ସେ କାଣୀ, କୁଜି, ଅସୁନ୍ଦରୀ, ଚରିତ୍ରହୀନା ହେଲେ ମଧ୍ୟ ପରିତ୍ୟାଜ୍ୟା ନୁହେଁ, ଧର୍ମପତ୍ନୀରୂପେ ଆଦରଣୀୟା। ଏହାର ପ୍ରମାଣ ମୋ ଜୀବନରେ ରହିଛି। ପରେ ପରେ ସେ ରୋଗାକ୍ରାନ୍ତ ହେଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ରୋଗୀ ହିସାବରେ ହିଁ ବଞ୍ଚିଲେ। ମୋର ସାରା ଜୀବନ ତାଙ୍କ ସେବାରେ ତାଙ୍କୁ ରୋଗମୁକ୍ତ କରିବା ପ୍ରୟାସରେ ଅତିବାହିତ।

ପୁଅର ଏକୋଇଶିଆ ପର୍ବ ଖୁବ୍ ଜାକଜମକରେ ପାଳନ କଲୁ। ଗୋଟିଏ ଭଲ ଭୋଜି କରିଥିଲୁ। ସେଠାକାର S.D.O, 2nd officer ଙ୍କ ସମେତ ପ୍ରାୟ ଶହେ ଲୋକଙ୍କୁ ଭୋଜିରେ ଆପ୍ୟାୟିତ କରିଥିଲୁ। ଏ ବ୍ୟବସ୍ଥା ଖୁବ୍ ଆକସ୍ମିକ ଭାବରେ ହେଲା। ଆଗ୍ରହ ବହୁତ ଥିଲେ ମଧ୍ୟ ଅର୍ଥାଭାବରୁ ସେ ଆଶା ଆମେ ତ୍ୟାଗ କରିଥିଲୁ। କିନ୍ତୁ ଯୋଗକୁ ବ୍ରହ୍ମା ଖଟନ୍ତି ନାହିଁ। ଏକୋଇଶିଆ ଦିନ ପ୍ରାୟ ୧୦ଟା ବେଳକୁ ଭାଇ ଭାଉଜଙ୍କ ସହ ବାଙ୍କିରେ ପହଞ୍ଚିଲେ ଏବଂ ଭୋଜି ଇତ୍ୟାଦି କରିବା ପାଇଁ ମୋତେ ଦୁଇଶହ ଟଙ୍କା ଦେଲେ। ଏ ଟଙ୍କା ପ୍ରାପ୍ତିର ଉତ୍ସ ଓ ଭୋଜିର ସହସା ବ୍ୟବସ୍ଥା ନିମ୍ନ ପ୍ରକାରର ଥିଲା। ଭାଉଜଙ୍କ ବାପଘର କଟକ ପାଖ ବିରୁଡ଼ି ଗ୍ରାମରେ। ତାଙ୍କର ବାପାବୋଉ ଉଭୟ ମରିଯିବାରୁ ସେ ତାଙ୍କ ବଡ଼ବାପାଙ୍କ ପାଖରେ ରହୁଥିଲେ ଯେ ଢେଙ୍କାନାଳ ଷ୍ଟେଟ୍‌ରେ ଚାକିରି କରୁଥିଲେ। ତାଙ୍କର ନିଜର ଭାଇ ନଥିଲେ। ବଡ଼ବାପାଙ୍କ ପୁଅ ଭାଇ ବୀରବାବୁ ତାଙ୍କ ବାହାଘର ବ୍ୟବସ୍ଥା କରିଥିଲେ। ଭାଉଜଙ୍କ ବାପାଙ୍କ ନାମରେ ଢେଙ୍କାନାଳ ଷ୍ଟେଟ୍‌ରେ ବେଲମାଳିଆ ଗ୍ରାମରେ କିଛି ଜଙ୍ଗଲିଆ ଜମି ଥିଲା। ବାହାଘର ବେଳେ ସେ ଜମିକୁ ବୀରବାବୁ ବିକ୍ରି କରିବାକୁ ଚାହୁଁଥିଲେ। ମୁଁ ତାଙ୍କୁ ଦେଢ଼ଶହ ଟଙ୍କା ଦେଇ ଜମି ବିକ୍ରି ବନ୍ଦ କରାଇଲି। ବାହାଘର ହୋଇଗଲା। ବୀରବାବୁ ବଡ଼ଧୂର୍ତ୍ତ ଓ ବ୍ୟବସାୟୀ ମନୋବୃତ୍ତିର ଲୋକ ଥିଲେ। ସେ ଏ ଜମିକୁ ବିକ୍ରୟ କରି ବାହାଘରରେ ଖର୍ଚ୍ଚ କରିଥିବା ଅବଶିଷ୍ଟ ଅର୍ଥ (ଦେଢ଼ଶହ ବାଦ୍) ଭରଣା କରିବାକୁ ଚାହୁଁଥିଲେ। ଯୋଜନା କରି ସେ ଭାଇ ଭାଉଜଙ୍କୁ ଡକାଇଲେ। ଉତ୍ତରାଧିକାରୀ ହିସାବରେ ଭାଉଜ ସେ ଜମି ବିକ୍ରି କଲେ। କେତେଟଙ୍କାରେ ବିକିଲେ ଏମାନେ ତାହାର ସତ୍ୟାସତ୍ୟ କିଛି ଜାଣି ଜାଣନ୍ତି ନାହିଁ। ଯାଙ୍କୁ ସେ ଦୁଇଶହ ପଚାଶ ଟଙ୍କା ଦେଲେ

ବୋଲି ଭାଇ କହିଲେ। ସେ ଟଙ୍କାରୁ ପଚାଶ ଟଙ୍କା ବାଟଖର୍ଚ୍ଚ କରି ଅବଶିଷ୍ଟ ଦୁଇଶହ ଟଙ୍କା ମତେ ଦେଲେ। ହାତକୁ ପଇସା ଆସିଗଲା। ମନୋବଳ ବଢ଼ିଗଲା। ଈଶ୍ୱରଙ୍କର ଇଚ୍ଛା ଭୋଜିହେଉ। ତେଣୁ ଖୁବ୍ ଖୁସୀ ମନରେ ମୁଁ ଭୋଜି ବ୍ୟବସ୍ଥାରେ ଲାଗିଗଲି। ସେଠାକାର ପ୍ରସିଦ୍ଧ ଗୁଡ଼ିଆ ଦୋକାନୀ ଗୌରାଙ୍ଗ ସାହୁଙ୍କ ସହ ଆଲୋଚନା ହୋଇ ଠିକ୍ ହେଲା, ପୁରୀ, ବୁଟଡାଲି, ମାଂସ ତରକାରୀ, ଖଟା, ଖିରି, ରସଗୋଲା ହେବ। ଲୋକସଂଖ୍ୟା ୧୦୦। ସେ ରାଜି ହେଲା ଏବଂ ଲୋକ ପଠାଇ ସାଙ୍ଗେ ସାଙ୍ଗେ ମାଂସର ବ୍ୟବସ୍ଥା କଲା। ସନ୍ଧ୍ୟା ୭ଟା ବେଳକୁ ସେ ଆମ ଘରକୁ ଜିନିଷ ବୋହି ଆଣିଲା। ଆମ ଘରକୁ ସଂଲଗ୍ନ ନାଏବ ତହସିଲଦାର ଅଫିସ୍ ଘରେ ଖିଆପିଆ ହେଲା। ଗୌରାଙ୍ଗ ସାହୁ ନିଜେ ରହି ପରିବେଷଣ କଲା। ସମସ୍ତେ ଭୋଜିରେ ବହୁତ ଖୁସୀ ହେଲେ।

ପୁଅର ଏକୋଇଶିଆ ପାଳନ ଆଉ ଏ ଆକସ୍ମିକ ଭୋଜି ତାହାର ଭବିଷ୍ୟତ ଜୀବନର ଉଜ୍ଜ୍ୱଳତା ବିଷୟରେ ମୋ ମନରେ ଆଶା ଓ ବିଶ୍ୱାସ ସଞ୍ଚାର କରିଥିଲା। ମୁଁ ଭାବୁଥିଲି ସେ ଜୀବନରେ ନିଶ୍ଚୟ ବଡ଼ ଆସନର ଅଧିକାରୀ ହେବ। ଏଇଟା ତାହାର ସୂଚନା-ବାସ୍ତବିକ ତାହା ସତ୍ୟରେ ପରିଣତ ହୋଇଛି। ସେ କେବଳ ନିଜେ ବଡ଼ ହୋଇନାହିଁ- ମୋ ପରିବାରର ଏକରକମ ରକ୍ଷକ ଓ ପାଳକ ଭାବରେ ଅନ୍ୟ ଭାଇ ଭଉଣୀଙ୍କୁ ମଧ ଯୋଗ୍ୟ କରିପାରିଛି।

ମୋ ବାହାଘର ପରେ ବାଙ୍କିରେ ଥିଲାବେଳେ ଗୋଟିଏ ଦୁଃଖଦ ଘଟଣା ଘଟିଗଲା। ମୁଁ ଯେଉଁ ଭଉଣୀକୁ ବିବାହ କରାଇଥିଲି ତା'ର ଆକସ୍ମିକ ମୃତ୍ୟୁ। ବାହାଘର ବର୍ଷକ ପରେ ତାହାର ପୁଅଟିଏ ହୋଇଥିଲା। ପୁଅଟିକୁ ପ୍ରାୟ ୨ ମାସ ହୋଇଥିଲା ଏ ଘଟଣା ଘଟିଲା। ଭଉଣୀର ସ୍ୱାମୀ ସହ ଗୋଳମାଳ ନଥିଲା କି ଶାଶୁଘର ଲୋକଙ୍କ ସହ କିଛି ଅମେଳ ନଥିଲା। ସମସ୍ତେ ତାକୁ ଭଲ ପାଉଥିଲେ। ସେ ତାହା ସ୍ୱାମୀର ଭାଉଜ ସହ ଅବୈଧ ସମ୍ପର୍କର ସୂଚନା ପାଇ ଉତ୍ୟକ୍ତ ହେଲା। ସ୍ୱାମୀ ପାଖରେ ଅଭିଯୋଗ କଲା, ରୁଷିଲା, ଖିଆପିଆ କଲା ନାହିଁ। ଅଣ୍ଟିଆ ଗ୍ରାମର ମୋର ଭିଣୋଇ ଲୋକନାଥ ଭାଇଙ୍କ ପାଖକୁ ଖବର ପଠାଇଲା। ସେ ମୋ ପାଖକୁ ଖବର ପଠାଇଲେ ଏବଂ ସ୍ଥିର କଲେ ମୁଁ ଗଲେ ସାଙ୍ଗହୋଇ ଯିବୁ। ମୁଁ ଅଣ୍ଟିଆ ଗଲି ଏବଂ ସେଠାରୁ ସାଙ୍ଗ ହୋଇ ସେ ଭଉଣୀ ଘରକୁ ଗଲୁ। ମାତ୍ର ଆମେ ପହଞ୍ଚିବାର ଦିନେ ଦୁଇଦିନ ପୂର୍ବରୁ ତା'ର ଶବ ଦାହ କ୍ରିୟା ସରିଯାଇଥିଲା। ଲୋକନାଥ ଭାଇଙ୍କର ସେ ଘର ସହ ଘନିଷ୍ଠ ସମ୍ପର୍କ। ବସ୍ତୁତଃ ତାଙ୍କରି ପ୍ରରୋଚନାରେ ସେଠାରେ ବାହାଘର ହୋଇଥିଲା। ସେ ଖବର ପାଇବା ମାତ୍ରେ ମତେ ଅପେକ୍ଷା ନ କରି ଯଦି ଯାଇଥାନ୍ତେ ତାହାହେଲେ ଏ ମର୍ମନ୍ତୁଦ ଦୁର୍ଘଟଣା ସହଜରେ ଏଡ଼ାଯାଇପାରିଥାନ୍ତା। ସେ ପାଞ୍ଚଛଅ ଦିନ ଭୋକ ଉପାସରେ ରହିଲା। ଓପାସ ଯୋଗୁଁ ଅଚେତ୍ତା ହୋଇଗଲା କି ତା'ର ସ୍ୱାମୀ ରାଗରେ ମାରଧର କରିବାରୁ ଅଚେତ ହୋଇଗଲା ଏକଥା ଠିକ୍ ଭାବରେ ଜଣା ନପଡ଼ିଲେ ମଧ ଅଚେତ୍ତା ହୋଇଯିବା ସତ। ତାହାର ଜୀବନ ଯାଇଛି କି ନାହିଁ ମରିଗଲା ବୋଲି ଭାବି ପୋଲିସ୍ ଭୟରେ ନିଜ ବାଡ଼ିରେ ତରବରରେ ପୋଡ଼ିଦେଲେ। ସାଇରେ ଏକଥା କେହି ଜାଣନ୍ତି ନାହିଁ। ଗୋପନୀୟ ଭାବରେ ତାହା କରିଥିବାରୁ ତାଙ୍କ କାର୍ଯ୍ୟ ନିଶ୍ଚିତ ଭାବରେ ସନ୍ଦେହଜନକ। ଏ ଘଟଣା ଦେଖି ଶୁଣି ଆମେ ହତବାକ୍ ହେଲୁ। ତା ଶାଶୁ ମତେ ଆଶ୍ୱାସନା ଦେବା ମାନସରେ ତା ପୁଅକୁ ଆଣି ମତେ ଧରିବାକୁ କହିଲେ। ମୋର ଅବରୁଦ୍ଧ କୋହ ଉଦ୍‌ବେଳିତ ହୋଇଉଠିଲା। ମନେଅଛି ମୋତେ କିଏ ଭଣଜା ବୋଲି ଚିହ୍ନାଇବ କହି ଭୋ, ଭୋ ହୋଇ ବହୁତ ସମୟ କାନ୍ଦିଲି। ତାହାପରେ କାହାକୁ କିଛି ନ କହି ଲୋକନାଥ ଭାଇ ଓ ମୁଁ ପଳାଇ ଆସିଲୁ।

ତାହାର ପୁଅଟି ସା'ନ୍ତମା, ବଡ଼ମାଙ୍କ ଯତ୍ନରେ ବଢ଼ିଲା। ତା ବଡ଼ବାପା ଟାଟାରେ ଚାକିରି କରୁଥିଲେ। ତାଙ୍କ ପାଖରେ ରହି ସେଠାରେ ପଢ଼ିଲା। ବି.ଏ. ପାସ୍ କରି ଟାଟା କମ୍ପାନୀରେ ଚାକିରି କରିଛି। ବାହାସାହା ହୋଇ ପୁଅଝିଅ ସହ ଭଲରେ ଅଛି। ଏସବୁ ଆମର ଶୁଣିବା ଖବର–ଆମେ ତାକୁ ଆଖିରେ ଦେଖିନାହୁଁ କି ସେ ଆମକୁ ଦେଖିନାହିଁ। ଭଉଣୀର ମୃତ୍ୟୁ ଯେପରି ହେଲା ଓ ତାହାର ସଂସ୍କାର ଯେପରି କଲେ, ତାଙ୍କୁ ପାଷାଣ୍ଡ ବର୍ବର ଛଡ଼ା ଆଉ କ'ଣ କହିବ। ଆମେ ତାଙ୍କ ସହ କୌଣସି ସମ୍ପର୍କ ରଖିଲୁ ନାହିଁ। ଏଇ ହେଲା କଷ୍ଟରେ କରିଥିବା ମୋର ଗୋଟିଏ କର୍ମର ପରିଣତି।

ଏ ତ ହେଲା ପୁଅର ଜନ୍ମ ପୂର୍ବ ଘଟଣା। ତା ଜନ୍ମ ପରେ ଆଉ ଏକ ଦୁଃଖଦ ଘଟଣା ଘଟିଥିଲା। ତାହା ମୋ ସାନ ଭାଇକୁ ନେଇ। ଏଇ ଯେଉଁ ଭଉଣୀ କଥା କହିଲି ତା'ର ଦିଅର ସମ୍ବଲପୁରରେ କୌଣସି ଅଟୋମୋବାଇଲ୍ସ ଫାର୍ମରେ ଚାକିରି କରୁଥିଲା। ମୋର ସାନ ଭାଇ ଯୋଗାଣ ବିଭାଗରୁ ଛଟେଇ ହେଇ ବୈରୀ ରାଇସ୍ ମିଲ୍‌ରେ କାମ କରୁଥିଲା। ମୁଁ ଭାବିଲି ଅଟୋ ମୋବାଇଲ୍ ଫାର୍ମରେ କାମ କଲେ ଭବିଷ୍ୟତ ଥଇଥାନ ସୁଗମ ହେବ। ଭଉଣୀର ଦିଅରକୁ ଏ ବିଷୟରେ ଚିଠି ଲେଖିଲି। ସେ ତାକୁ ସମ୍ବଲପୁର ପଠାଇଦେବାକୁ ଲେଖିଲେ। ତଦନୁଯାୟୀ ସାନଭାଇ ତାଙ୍କ ପାଖକୁ ଗଲା। ସେଠି କାମଦାମ କରୁଥିଲା– କି କାମ କରୁଥିଲା, ମୁଁ ଜାଣିନାହିଁ। କିଛିଦିନ ପରେ ମତେ ଚିଠିରେ ଲେଖିଲା, ଯେ ତାହା ଦେହ ଭଲନାହିଁ। ଏ ଚିଠି ପାଇ ମୁଁ ବଡ଼ ବ୍ୟସ୍ତ ହୋଇ ପଡ଼ିଲି। ମୁଁ ଭାବିଲି କିଛି ସାଂଘାତିକ ଅବସ୍ଥାର ଆଶଙ୍କା ନ କଲେ ସେ ଆଦୌ ଦେହଭଲ ନାହିଁ ଚିଠି ମୋତେ ଲେଖିବ ନାହିଁ। ମୁଁ ତାକୁ ସାଙ୍ଗେ ସାଙ୍ଗେ ମୋ ପାଖକୁ ବାଙ୍କି ଆସିବାକୁ ଲେଖିଲି। ସେ ଚିଠି ପାଇ ଆସିଲା। ମୁଁ ଦେଖିଲି ତା ସ୍ୱାସ୍ଥ୍ୟ କିଛି ଖରାପ ହୋଇନାହିଁ। ମାତ୍ର ତାକୁ ଜର ହେଉଛି। ମୁଁ ତାକୁ ବାଙ୍କି ଡାକ୍ତରଖାନାରେ ଦେଖାଇଲି। ସେମାନେ ଔଷଧ ଦେଲେ। ତିନିଚାରି ଦିନ ଗଲା କିଛି ପରିବର୍ତ୍ତନ ହେଲାନାହିଁ। ତାକୁ କଟକ ନେବାପାଇଁ ସେମାନେ କହିଲେ। ମୁଁ ତ କଟକରେ ଆତଯାତ ହୋଇନାହିଁ। ପୁଣି ରୋଗୀ ନେଇ ସେଠାରେ ଚିକିତ୍ସା କରିବି କିପରି ? ମୁଁ ଆତଙ୍କିତ ହୋଇ ପଡ଼ିଲି। ସେତେବେଳକୁ ପୁଅକୁ ଦୁଇ କି ଅଢ଼େଇ ମାସ ହେବ। ବର୍ଷା ଦିନ ଆରମ୍ଭ ହୋଇଗଲାଣି। ତଥାପି ମତେ ଯିବାକୁ ହେବ। ବିଳମ୍ବ ନ କରି ମୁଁ ତାକୁ ନେଇ କଟକ ଗଲି। ବାଙ୍କିର ଜଣେ ଲୋକ (ନାରଣବାବୁ) କଟକ ସପ୍ଲାଇ ଅଫିସ୍‌ରେ କାମ କରନ୍ତି। ସେ ମୋ ସହିତ ଭାରି ଘନିଷ୍ଠ। ପୂର୍ବରୁ ସେ ବାଙ୍କିରେ ଥିଲେ ଏବଂ ଏକତ୍ର କାମ କରୁଥିଲୁ। ତାଙ୍କୁ ସାଙ୍ଗରେ ନେଇ ଡାକ୍ତରଖାନା ଗଲି। ସେଠାରେ ଡାକ୍ତର ଯୋଗେଶ୍ ରାଉତ (ବାଙ୍କିରେ ଘର)ଙ୍କ ସାହାଯ୍ୟ ନେଲି। ଆଉଟ୍ ଡୋର୍‌ରେ ରୋଗୀ ଦେଖାହେଲା ସେଦିନ ଜଣେ ସାଙ୍ଗଙ୍କ ମେସ୍‌ରେ ରହିଲି। ତହିଁ ଆରଦିନ ସକାଳୁ ତାକୁ ନେଇ ଡାକ୍ତରଖାନା ଗଲି। ନାରଣବାବୁ ବି ଆସିଲେ ପୁଣି ରୋଗୀ ଦେଖାହେଲା। ସାମାନ୍ୟ କିଛି ପରୀକ୍ଷା ହେଲା। କିନ୍ତୁ କୌଣସି ରକମ ଚିକିତ୍ସା ବ୍ୟବସ୍ଥା ହୋଇପାରୁନଥାଏ। ସେଦିନ ଡାକ୍ତରଖାନାରୁ ଆସି ବାଙ୍କାବଜାର ଧର୍ମଶାଳାରେ ରହିଲି। ସେଠାରେ ମୁଁ ଦେଖିଲି ସେ କେବଳ ରକ୍ତ ପରିସ୍ରା କଲା। ମୁଁ ଭୟରେ ଛାନିଆ ହୋଇଗଲି। ତହିଁ ଆରଦିନ ଡାକ୍ତରଖାନା ଗଲି–ନାରଣବାବୁ ବି ଆସୁଥାନ୍ତି। ଯୋଗେଶବାବୁ ବି ପାଖେ ପାଖେ ଥାନ୍ତି। ସେହିଦିନ ଯୋଗେଶ ବାବୁ କହିଲେ ଏ ପ୍ରକାର କିଛି ଚିକିତ୍ସା ବ୍ୟବସ୍ଥା ହୋଇପାରିବ ନାହିଁ। ରୋଗ ତ ଚିହ୍ନି ପାରୁନାହାନ୍ତି। ୱାର୍ଡରେ ଭର୍ତ୍ତି କରିଦେଲେ ସେମାନଙ୍କର ଦାୟିତ୍ୱ ବଢ଼ିବ। ଭଲରେ ଦେଖାଦେଖି କରିବେ। ଏମିତି ଆଉଟ୍‌ଡୋର୍‌ରେ ଟିକେ ଦେଖି ବିଦା କରିଦେଉଛନ୍ତି। ରକ୍ତ ପରିସ୍ରା କରିଥିଲା ବୋଲି ମୁଁ କହିଥିଲି।

ଯୋଗେଶ୍ ବାବୁ ସେଇଆ କହି କୌଣସି ପ୍ରକାରେ ମେଡିସିନ୍ ୱାର୍ଡରେ ଆଡ୍‌ମିଟ୍ କରାଇଦେଲେ। ତାକୁ ଗୋଟାଏ ଖଟିଆ ଦେଲେ। ସେ ଟିକେ ଆରାମରେ ବିଶ୍ରାମ ନେଲା। ଯୋଗେଶ୍ ବାବୁ ଖଲାସ ହେଲେ। ସେତେବେଳକୁ ବାଙ୍କିରୁ ଆସିବା ମୋର ୫/୬ ଦିନ ହୋଇଗଲାଣି। ପଇସା ବି ସରି ଆସିଲାଣି। ଘରେ ଛୋଟ ପିଲା, ମାଇପେ ଦୁଇଜଣ-କିପରି ଚଳୁଛନ୍ତି। ଏସବୁ କଥା ଏ ୫/୬ ଦିନ ଭୁଲିଯାଇଥିଲି। ୟାଡେ ଟିକେ ଉଶ୍ୱାସ ଦେବାରୁ ଏ ସବୁ କଥା ମନେ ପଡ଼ିଲା। ଖାଲି ମନେ ପଡ଼ିଲା ନୁହେଁ ମନକୁ ଆକୁଳିତ କରିଦେଲା। ନାରଣ ବାବୁଙ୍କୁ ସବୁକଥା ଜଣାଇଲି ଏବଂ କହିଲି- ମୁଁ ଆଜି ଯାଉଛି, ୨ଦିନ ପରେ ଆସିବି। ଆପଣ ଟିକେ ଦେଖିବେ। ସେ ରାଜି ହେଲେ। ମୁଁ ସାନଭାଇକୁ ବୁଝାସୁଝା କରି ବାଙ୍କି ଗଲି। ରାତିରେ ପହଞ୍ଚିଲି। ପରଦିନ ଅଫିସ୍ ଗଲି, ତା ପରଦିନ ମଧ୍ୟ ଅଫିସ୍ ଗଲି। ଅଫିସ୍‌ରେ ଥିବାବେଳେ ପ୍ରାୟ ୨ଟା ୩ଟା ବେଳକୁ ଟେଲିଗ୍ରାମ୍ ପାଇଲି "Lakshman expired" ମୋ ମୁଣ୍ଡରେ ବଜ୍ରପାତ ହେଲା। ମୋର ମନେ ଅଛି-ମୁଁ ମୃତ ପାଇଁ ଯେତେ ଆତୁର ନ ହେଲି, ବୋଉ ପାଇଁ ତତୋଽଧିକ ବିକଳ ହେଲି। ମୁଁ ଭାବିଲି କିପରି ଏ ଦାରୁଣ ଖବର ତାକୁ ଦେବି। ସେ ଏହାକୁ କି ଭାବରେ ଗ୍ରହଣ କରିବ। କହିବ-'ତୁ ମୋ ପୁଅକୁ ମାରି ପକାଇଲୁ'। ମୁଁ ତାକୁ କି ଉତ୍ତର ଦେବି। କି ସାନ୍ତ୍ୱନା ତାକୁ ଦେବି। ଘରକୁ ଆସିଲି, ବୋଉକୁ କହିଲି, ସେ ଥକା ହେଲାପରି ମୁଣ୍ଡରେ ହାତ ଦେଇ ବସିପଡ଼ିଲା। କିଛି କହିଲା ନାହିଁ, ମୁଣ୍ଡପୋତି ଅଶ୍ରୁ ବିସର୍ଜନ କରିବାକୁ ଲାଗିଲା। ମୁଁ ବୋଉକୁ କହିଲି ବୋଉ କାନ୍ଦିଲେ ଆମେ କ'ଣ କରିବା। ସେ କ'ଣ ଆଉ ଫେରିଆସିବ। ଆମ ଭାଗ୍ୟ, ତୁ କାନ୍ଦନା-ମତେ ଅନାଇ ସବୁ ଭୁଲିଯା। ଏହାପରେ ମୋର ଅସଲ ଚିନ୍ତା ଆରମ୍ଭ ହେଲା। ଏବେ ମୁଁ କ'ଣ କରିବି ମୃତ୍ୟୁର ଦିନ ସମୟତ ଜଣାନାହିଁ। ମୃତ୍ୟୁ ପରେ ପରେ ସେମାନେ ଶବ ବାହାରକୁ ନେଇ ଆସିଥିବେ। ଖୁବ୍ ହେଲେ ଚାରି ପାଞ୍ଚଘଣ୍ଟା ଅପେକ୍ଷା କରି କେହି ଦାବୀଦାର ନାହିଁ ଜାଣି ନିୟମ ଅନୁସାରେ ଯାହା କରିବାର କଥା କରିସାରିଥିବେ। ଏ ଅବସ୍ଥାରେ ସେଠାରେ ପହଞ୍ଚି ଶବ ଖୋଜିବା ଗୋଟାଏ ପ୍ରହସନ ପରି ହେବ। ହୁଏତ ମୋତେ ମୃତ ବ୍ୟକ୍ତିର ଘନିଷ୍ଠ ସମ୍ପର୍କୀୟ ନ ଭାବି ଥଟ୍ଟା ତାମସା କରି କଥା କହିବେ। "ଏତେ ଦରଦୀ ବନ୍ଧୁ କେଉଁଠି ଥିଲା!" ମୋର ଦୃଢ଼ ଧାରଣା ହେଲା ସେଠାକୁ ଗଲେ ଶବ ତ ପାଇବି ନାହିଁ ଉପହସିତ ହେବା ସାର ହେବ। ତଥାପି ମୁଁ କଟକ ବାହାରିଲି ଏବଂ ସନ୍ଧ୍ୟାବେଳକୁ କଟକରେ ପହଞ୍ଚିଲି। ମାତ୍ର ମୋ ଗୋଡ଼ ମେଡିକାଲ ଆଡ଼କୁ ଜମା ଚଳିଲା ନାହିଁ। ଇତସ୍ତତଃ ହୋଇ ଗାଁକୁ ଗଲି। ଘରେ ଖବର କହି ଫେରି ଆସିଲି।

ଗୋଟିଏ ବଳିଷ୍ଠ ସୁନ୍ଦରକାୟ ଯୁବକର ଜୀବନାବସାନ ଏହିପରି ହେଲା। ଏହା ପଚାଶ ବର୍ଷତଳର ଘଟଣା। ମାତ୍ର ଏବେବି ଏହା ମୋ ମନରେ ଜୀବନ୍ତ ରହିଛି। ସ୍ମରଣ ମାତ୍ରକେ ଦେହ ମନ ଅବଶ ହୋଇଯାଏ। ଜନ୍ମିତର ମରଣ ଅନିବାର୍ଯ୍ୟ-ତାହା କେତେବେଳେ ଘଟିବ କିପରି ଘଟିବ ମଣିଷକୁ ଅଗୋଚର। ତାହା ମୃତ୍ୟୁ ପାଇଁ ମୁଁ ଯେତେ ଦୁଃ କରିନାହିଁ- ବେଶୀ ଦୁଃଖ ହେଉଛି ତା'ର ଶବର ପରିଣତି ଏବଂ ସଂସ୍କାର ବିଧିର ଅପାଳନ ପାଇଁ। ଏଥିପାଇଁ ମୁଁ-କେବଳ ମୁଁ ହିଁ ଦାୟୀ। ପରିସ୍ଥିତି ଯାହା ହେଉ ଶବର ଅନୁସନ୍ଧାନ କରିବା ମୋର ନିହାତି ଉଚିତ୍ ଥିଲା। ଅନ୍ତତଃ ସେତିକି କରିଥିଲେ ମୋ ମନରେ ଏତେ ଦୁଃଖ ଆସନ୍ତା ନାହିଁ। ଯେଉଁ ପ୍ରକାର ଭାବନା କରି ମୁଁ ସେ କର୍ମରୁ ନିବୃତ୍ତ ହେଲି ତାହା ଗ୍ରହଣୀୟ ନୁହେଁ। ଶୁଣିଲା ଲୋକ କହିବ-ମୋର ସ୍ନେହ ଭାବ, ଆତ୍ମୀୟତାର ଅଭାବରୁ ଏପରି ହେଲା। "ହେ ଭଗବାନ୍ ମୁଁ ଦୋଷ ସ୍ୱୀକାର କରୁଛି। ମୋ ପାଇଁ ଯେଉଁ ଦଣ୍ଡ ହକ୍ ତାହା

ଦିଆଯାଉ।'' ମୋ ଶବ ପଡ଼ି ପଡ଼ି ସଢ଼ିଗଲେ ତାକୁ ଯଦି କିଛି ଉପଶମ ମିଳିବ, ତାହା ହେଲେ ତାହାହିଁ ହେଉ।

ରାମାୟଣର ରାମ ପାଖରେ ଲକ୍ଷ୍ମଣ ପରି ସେ ମୋ ପ୍ରତି ଏକାନ୍ତ ଅନୁଗତ ଥିଲା। ମୁଁ ତାହାଠାରୁ ମାତ୍ର ଦେଢ଼ବର୍ଷ କି ଦୁଇବର୍ଷ ବଡ଼। ସେ ତାହା ବାଟରେ ବଞ୍ଚିଥିଲା। ମୁଁ ମୋ ବାଟରେ ବଞ୍ଚିଥିଲି। ସମ୍ପର୍କ ବା କ'ଣ ଥିଲା। ତାହାର ଆନୁଗତ୍ୟର କାରଣ ମୁଁ କିଛି ବୁଝିପାରେ ନାହିଁ। ସମ୍ବଲପୁର ଯାଆ କହିଲି ଗଲା। ମୋ ପାଖକୁ ଚାଲିଆ କହିଲି ଆସିଲା, ମେଡିକାଲ୍ ଚାଲେ ଗଲା, ଖଟିଆରେ ଶୋ, ଶୋଇଲା। ମୁଁ ଯାଉଛି ଦିଦିନ ପରେ ଆସିବି, ହଁ ଯା। କେଉଁଥିରେ ଆପତ୍ତି ନାହିଁ କି ଅଭିଯୋଗ ନାହିଁ। ତାହାର ଆଚରଣଗତ ବ୍ୟବହାର ମନେପଡ଼ି ମୋତେ ଗତ ପଚାଶବର୍ଷ ଧରି ସନ୍ତୁଳିତ କରୁଛି। ଏହାର ଅବସାନ କେବଳ ମୋର ମୃତ୍ୟୁରେ ହିଁ ହେବ।

ତାହାର ତିରୋଧାନ ମୋ ମନରେ ଆଲୋଡ଼ନ ସୃଷ୍ଟି କରୁଥିଲେ ହେଁ ସାଧାରଣ ଭାବରେ ଏ ବିଷୟରେ ଆଲୋଚନାରୁ ଆମେ ଓହରିଗଲୁ। ଜୀବନ ଗତାନୁଗତିକ ଗୁଳାରେ ଚାଲିଲା।

ବାଙ୍କିରେ ଥିଲାବେଳେ ସ୍ତ୍ରୀ ପୁଅକୁ ନେଇ ଆମ ଗାଁରେ କିଛିଦିନ ରହିଥିଲେ। ହାତରୁ ଚୁଡ଼ି ବନ୍ଧାପକାଇ ଭାଇଙ୍କୁ ଟଙ୍କା ଦେଲେ। ଭାଇ ସେଥିରୁ ପାଞ୍ଚଗୁଣ୍ଠ ଜମି ତାଙ୍କ ନାମରେ କିଣିଲେ। ମୁଁ ବହୁ କଷ୍ଟରେ ସୁଧସହ ଟଙ୍କା ଶୁଝି ତାଙ୍କ ଚୁଡ଼ି ମୁକୁଳାଇଲି। ପରେ ଭାଇ ସେ ଜମିକୁ ବିକି ଟଙ୍କା ଆତ୍ମସାତ କଲେ। ମୁଁ କି ମୋ ସ୍ତ୍ରୀ କେବେ. ତାଙ୍କୁ ଏ ବିଷୟରେ ପ୍ରଶ୍ନ କରିନାହୁଁ।

କିରାଣୀ ମାନଙ୍କର ଗୋଟିଏ ଏକାଉଣ୍ଟସ୍ ପରୀକ୍ଷା ହୁଏ। ତାହା ଦୁଇ ଭାଗରେ ବିଭକ୍ତ- ପ୍ରିଲିମିନାରୀ, ଫାଇନାଲ। ମୁଁ ପ୍ରିଲିମିନାରୀ ପରୀକ୍ଷା ୫୨ ମସିହାରେ ଦେଲି, ପାସ୍ କଲି। ପର ପରିସ୍ଥିତି ଏପରି ହେଲା। ମୁଁ ଫାଇନାଲ୍ ପରୀକ୍ଷା ଦେଇପାରିଲି ନାହିଁ। ଏହି ସମୟରେ ଜମିଦାରୀ ଉଚ୍ଛେଦ ହେଲା, ଅଞ୍ଚଳ ଅଫିସ୍ (ପରବର୍ତ୍ତୀ ତହସିଲ ଅଫିସ) ସୃଷ୍ଟି ହେଲା। ପ୍ରତି ଅଫିସ୍ ପାଇଁ ହେଡକ୍ଲର୍କ ପୋଷ୍ଟ ସୃଷ୍ଟିହେଲା। ବୋର୍ଡ ଅଫ୍ ରେଭିନ୍ୟୁ ଦ୍ୱାରା ପରିଚାଳିତ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ମୁଁ ପଟ୍ଟାମୁଣ୍ଡାଇ ଅଞ୍ଚଳ ଅଫିସ୍ ହେଡକ୍ଲର୍କ ପୋଷ୍ଟରେ ନିଯୁକ୍ତି ପାଇଲି। ମୁଁ ସେଠାରେ ବୋଧେ ୫୪ ମସିହା ଜୁନ୍ ମାସରେ ଜଏନ୍ କଲି। ଏହି ଜାଗାଟି କଟକରୁ ପ୍ରାୟ ୬୦ କି.ମି. ଦୂର। ବସ୍ ଦ୍ୱାରା ସଂଯୁକ୍ତ। ଏହା ଗୋଟିଏ ଥାନା ସଦର ମହକୁମା। ଏଠାରେ ସବ୍ ରେଜିଷ୍ଟାର୍ ଅଫିସ୍ ଥାଏ। ଏଠାରେ ଲୋକମାନେ ଭାରି ମାଛପ୍ରିୟ ଓ ବିଳାସୀ। ମୁଁ ଥରେ ଅଧକିଲୋ ଚିନି ଠୁଙ୍ଗାରେ ଧରି ଆସୁଥିଲି। ବାଟରେ ସେଠାକାର ବାସିନ୍ଦା ପ୍ରସିଦ୍ଧ ଲୋକ, ଡାକ୍ତରଙ୍କ ସହ ଦେଖାହେଲା। ମୁଁ ନିଜେ ଚିନି ଠୁଙ୍ଗା ଧରି ଆସିବାକୁ ସେ ପସନ୍ଦ କଲେନାହିଁ। କହିଲେ ଆପଣଙ୍କର କ'ଣ ଲୋକବାକ ଅଭାବ। ସେଠାରେ ମହିଷି ଘିଅ ସମସ୍ତେ ବ୍ୟବହାର କରନ୍ତି। ଥରେ ଜଣେ ଲୋକ ମତେ କହିଲେ ''ନ ଖାଇବ ନାହିଁ, ଡାଲଡା ଘିଅ ଗୁଡ଼ା କାହିଁକି ଖାଇବ। ସେମାନଙ୍କର ରୁଚି ଏହି ପ୍ରକାର।

ଏହିଠାରେ ୫୫ ମସିହା ଏପ୍ରିଲ୍ ମାସରେ ମୋର ଦ୍ୱିତୀୟ ସନ୍ତାନ ଝିଅ ଜନ୍ମ ହେଲା। ଏହାପରେ ସ୍ତ୍ରୀଙ୍କର ବେମାର ଆରମ୍ଭ ହେଲା ଏବଂ ତାହା ସଙ୍ଗେ ମୋ ହୀନସ୍ତାର ମୂଳଦୁଆ ପଡ଼ିଲା।

ହୋମିଓପ୍ୟାଥିକ୍, କବିରାଜି ଆଦି ନାନାପ୍ରକାର ଔଷଧ ଦିଆଗଲା। କିଛି ଉପକାର ମିଳିଲା ନାହିଁ। ସେ

ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲେ। ଭଲ ଚିକିତ୍ସା ଆଶାରେ ବାପ ଘରକୁ ଗଲେ। ସେଠାରେ ଛଅମାସ ରହିଲେ। କଟକ ଆସି ବିଭିନ୍ନ ଡାକ୍ତରଙ୍କୁ ଦେଖାଇଲେ, ଔଷଧ ଖାଇଲେ ମାତ୍ର ଅବସ୍ଥା ଅଧିକ ଖରାପ ହେବାକୁ ଲାଗିଲା। ହତାଶ ହୋଇ ଗ୍ରାମ ଠାକୁର ଶ୍ୟାମସୁନ୍ଦରଙ୍କ ପାଖରେ ଅଧା ପଡ଼ିଲେ। ଠାକୁର ବି ଡାକ ଶୁଣିଲେ ନାହିଁ। ପଟ୍ଟାମୁଣ୍ଡାଇ ପ୍ରତ୍ୟାବର୍ତ୍ତନ କଲେ। ସେଠାରେ ଏଲୋପ୍ୟାଥି ଡାକ୍ତରଙ୍କୁ ପରାମର୍ଶ କଲି। ସେ ରୋଗ ଚିହ୍ନିଲେ ଏବଂ ଛାତି ଏକ୍ସରେ କରିବା ପାଇଁ କହିଲେ। ସେଥିପାଇଁ କଟକ ଯିବାକୁ ହେବ। କଟକ ଗଲେ ଚିକିତ୍ସା ସେଠାରେ କରିବି, ଏକ୍ସ-ରେ କରି ପଳାଇ ଆସିବି କାହିଁକି ? ଏପରି ସ୍ଥିର କରି ସମଗ୍ର ପରିବାର ସହ କଟକ ଆସିଲି। ମୁଁ ସବୁବେଳେ ନିଜକୁ ଅକର୍ମା, ଅପାରଗ, ଅକ୍ଷମ ସହାୟଶୂନ୍ୟ ବୋଲି ଭାବିଥାଏ। ମାତ୍ର ଦରକାର ବେଳେ ମତେ ସବୁ ପ୍ରକାର ସାହାଯ୍ୟ ସହାନୁଭୂତି ମିଳିଯାଏ। ପ୍ରତିକୂଳ ପରିସ୍ଥିତିକୁ ସାମନା କରିବା ପାଇଁ ଅନୁକୂଳତାର ପ୍ରଚ୍ଛନ୍ନ ହାତ କୁଆଡୁ ଲମ୍ବିଆସେ। ଏହାହିଁ ପ୍ରାରବ୍ଧ। ପଟାମୁଣ୍ଡାଇରେ ସେତେବେଳେ ସପ୍ଲାଇ ଇନିସ୍‌ପେକ୍ଟର ଥିଲେ ଅନାଦି ମହାରଣା। ତାଙ୍କ ସହ ମୁଁ ବେଶ୍ ଘନିଷ୍ଠ। ତାଙ୍କ ପିଅନ ଭାଗିରଥୀର ଘର କଟକରେ। ତାଙ୍କ ନିର୍ଦ୍ଦେଶରେ ସେ ମୋ ସାଙ୍ଗରେ ଆସିଲା ଏବଂ ଆମକୁ ତା ଘରେ ଥଇଥାନ କଲା। ଭାଗିରଥୀ ଘରର ଅନ୍ୟ ଏକ ଅଂଶରେ ବୋର୍ଡ ଅଫ୍ ରେଭିନ୍ୟୁର ଅଡିଟର ରଘୁନାଥ ପାତ୍ର ସପରିବାର ରହୁଥିଲେ। ତାଙ୍କ ସହ ମଧ ମୁଁ ବେଶ୍ ପରିଚିତ। ସେ ପଟ୍ଟାମୁଣ୍ଡାଇ ଅଫିସ୍ ଅଡିଟ୍ କରିବାକୁ ଯାଇଥିଲେ। ତାଙ୍କ ସାନଭାଇ ଜଗନ୍ନାଥ ପାତ୍ର ମେଡିକାଲ ପଢୁଥିଲେ, ଫାଇନାଲ୍ ଇଅର ଛାତ୍ର। ସେ ବି ତାଙ୍କ ପାଖରେ ରହୁଥିଲେ। କହିବା ବାହୁଲ୍ୟ ସେମାନଙ୍କଠାରୁ ମୁଁ ବହୁତ ବହୁତ ସାହାଯ୍ୟ ସହାନୁଭୂତି ପାଇଛି ଯାହା ଅବର୍ଣ୍ଣନୀୟ।

ପ୍ରଫେସର ଡାକ୍ତର ଶରତ ମିଶ୍ରଙ୍କୁ ଆଉଟଡୋର୍‌ରେ ରୋଗୀ ଦେଖାଇଲି। ଜଗନ୍ନାଥ ବାବୁ ବି ପାଖରେ ଥିଲେ। ଡାକ୍ତର ଏକ୍ସ-ରେ, ଇ.ଏସ୍.ଆର୍, କଫ, ଝାଡ଼ା ପରିସ୍ରା ଇତ୍ୟାଦି ପରୀକ୍ଷାର ବ୍ୟବସ୍ଥା ପତ୍ର ଦେଲେ। ମୁଁ ସେ ସବୁ ପରୀକ୍ଷା କରାଇ ପରୀକ୍ଷା ରିପୋର୍ଟ ଡାକ୍ତର ମିଶ୍ରଙ୍କୁ ଦେଖାଇଲି। ସେ ଏକ ଲମ୍ବା ବ୍ୟବସ୍ଥା ପତ୍ର ଦେଲେ। ଔଷଧ ଇଞ୍ଜେକ୍‌ସନ୍, ଖାଦ୍ୟପେୟର ସବିଶେଷ ବ୍ୟବସ୍ଥା ଦେଲେ। ଚିକିତ୍ସା ଚାଲିଲା। କହିବା ବାହୁଲ୍ୟ ଅଳ୍ପଦିନ ପରେ ତାଙ୍କ ସ୍ୱାସ୍ଥ୍ୟରେ ପରିବର୍ତ୍ତନ ପରିଲକ୍ଷିତ ହେଲା। ପରନ୍ଦରଦିନ ପରେ ଇଞ୍ଜେକ୍‌ସନ୍ ବନ୍ଦହେଲା ମାତ୍ର ଅନ୍ୟ ଔଷଧ ଓ ଖାଦ୍ୟ ବ୍ୟବସ୍ଥା ଅପରିବର୍ତ୍ତିତ ରହିଲା।

ମଫସଲ ଓ କଟକର ଚିକିତ୍ସାରେ ତାରତମ୍ୟ ଅନୁଭବ କରି ମୁଁ ଭାବିଲି କଟକରେ ନ ରହିଲେ ସ୍ତ୍ରୀଙ୍କର ଚିକିତ୍ସା ସଫଳ ଭାବରେ ମୁଁ କରିପାରିବି ନାହିଁ। କଟକ ବଦଳି ପାଇଁ ଆମ ଅଥରିଟିଙ୍କୁ ଅନୁରୋଧ କଲି। ସେ ମୋର ଦୁରବସ୍ଥା ଅନୁଭବ କରି ବଦଳି କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ। ନାନା କାରଣରୁ ବଦଳି କଲେ ନାହିଁ। ପ୍ରତିଶ୍ରୁତି ପ୍ରତିଶ୍ରୁତିରେ ରହିଲା। ଏହି ସମୟରେ ମୁଁ କଟକରେ ନୂଆ ସ୍ଥାପିତ ହୋଇଥିବା ଟାଉନ୍ ପ୍ଲାନିଂ ଅଫିସରେ ଏକାଉଣ୍ଟାଣ୍ଟ ପୋଷ୍ଟ ଖାଲି ଥିବାର (ସେ ଅଫିସ୍‌ରେ କାମ କରୁଥିବା ମୋର ଜଣେ ଘନିଷ୍ଠ ବନ୍ଧୁଙ୍କଠାରୁ) ଖବର ପାଇ ଦରଖାସ୍ତ କଲି। ସେ ବନ୍ଧୁଙ୍କ ନାମ ନକୁଳ ମଲ୍ଲିକ। ଆମେ ବାଙ୍କିରେ ଏକତ୍ର ଚାକିରି କରୁଥିଲୁ। ମୋର ଏ ନିଯୁକ୍ତି ହେବାପାଇଁ ସେ ମଧ ଚେଷ୍ଟା କରୁଥିଲେ।

ଛୁଟିରେ ରହିବା ପ୍ରାୟ ତିନିମାସ ହୋଇଗଲା। ସ୍ତ୍ରୀଙ୍କର ସ୍ୱାସ୍ଥ୍ୟ ବି ବହୁତ ଉନ୍ନତ ହୋଇଗଲାଣି। ଡାକ୍ତର

ପରାମର୍ଶ ଆଉ ଦରକାର ନାହିଁ। ତେଣୁ ଛୁଆପିଲାଙ୍କୁ ନେଇ ମୁଁ ପଟ୍ଟାମୁଣ୍ଡାଇରେ ଜଏନ୍ କଲି। ଆମର ଅସଜଡ଼ା ପରିବାର ସଜାଡ଼ି ହୋଇ ପୁଣି ଭଲରେ ଚାଲିଲା। ବୋଉତ ଥିଲା, ପିଅନମାନଙ୍କର ସହାୟତା ମିଳୁଥିଲା। ସ୍ତ୍ରୀ ନୂତନ ଜୀବନ ଲାଭ କଲାପରି ବେଶ୍ ଖୁସିରେ ରହିଲେ। କଟକ ରହଣି ଭିତରେ ଆର୍ଥିକ ସମସ୍ୟା ତୁଲାଇବା ପାଇଁ ସ୍ତ୍ରୀଙ୍କର କେତୋଟି ସୁନା ଅଳଙ୍କାର ବିକ୍ରୟ କରିଦେଇଥିଲି। ସ୍ତ୍ରୀଙ୍କର ଚିକିତ୍ସା ପାଇଁ ମୁଁ ଟ୪୦୦ର ଔଷଧ କିଣିଥିଲି। ସରକାରଙ୍କ ଠାରୁ ତାହା ପାଇବା ପାଇଁ ଭାଉଚର ଇତ୍ୟାଦି ସହ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଫିସରେ ଦରଖାସ୍ତ କଲି। ସେ ମହାଶୟ ଚିକିତ୍ସା କରିଥିବା ଡାକ୍ତରଙ୍କୁ ନ ପଚାରି ମୋର ଦାବୀ ନାମଞ୍ଜୁର କଲେ। କାରଣ ଆଉଟ୍‌ଡୋର୍ ଟିକେଟ୍‌ରେ ଔଷଧ ଲେଖା ହୋଇନାହିଁ। ମୋ ଜୀବନରେ ଏଇ ଗୋଟିଏ ନିଷ୍ଠୁର କର୍ମ ମୋ ପ୍ରତି କରାଯାଇଥିଲା। କି ଦୋଷ ମୁଁ କରିଥିଲି !

ଟାଉନ୍ ପ୍ଲାନିଂ ଅଫିସ୍‌ରୁ ନିଯୁକ୍ତି ପତ୍ର ଆସିଗଲା। ମୁଁ ସେଠାରୁ ରିଲିଭ୍ ହୋଇ ପରିବାର ଜିନିଷପତ୍ର ନେଇ କଟକ ଆସିଲି ଏବଂ ୫୭ ମସିହା ଜାନୁଆରୀ ୨୯ ତାରିଖରେ ସେ ଅଫିସ୍‌ରେ ଜଏନ୍ କଲି। ପଟ୍ଟାମୁଣ୍ଡାଇ ଚାକିରି ଛାଡି କଟକ ଏ ଚାକିରିକୁ ଆସିବା ପାଇଁ ସ୍ତ୍ରୀଙ୍କର ଆଦୌ ମତ ନଥିଲା। ଉଭୟଙ୍କର ଦୃଷ୍ଟିକୋଣ ବିଚାର ଭିନ୍ନ। ପଟ୍ଟାମୁଣ୍ଡାଇର ଘର, ପିଅନ, ପ୍ରଭାବ, ଖାତିରି ଏଗୁଡ଼ାକୁ ସେ ଦେଖୁଥିଲେ। ମୁଁ ଦେଖୁଥିଲି କେବଳ ତାଙ୍କ ଚିକିତ୍ସାର ସୁବିଧା। ତାଙ୍କ ବିରୋଧ ସତ୍ତ୍ୱେ ମୁଁ ମୋ ମତରେ ଦୃଢ଼ ରହି ଏଠାକୁ ଆସିଲି। ମୋର ଜୀବନକୁ ସାମଗ୍ରିକ ଭାବରେ ପର୍ଯ୍ୟାଲୋଚନା କଲେ କଟକ ଚାକିରିକୁ ଆସିବା ମୋ ପାଇଁ ମଙ୍ଗଳପ୍ରଦ ହୋଇଛି ବୋଲି ଜାଣି ହେବ। ମୁଁ ଏ ବିଷୟରେ ଗୋଟିଏ ଛୋଟ ପ୍ରବନ୍ଧ ମୋର "As I feel" ବହିରେ ଲେଖିଛି। ପ୍ରବନ୍ଧଟିର ନାମ "Blessings in disguise"

ଯାଜପୁରରେ ପ୍ରଥମେ ଗୋଟିଏ ମେସ୍‌ରେ ଥିଲି। ପରେ ଗୋଟିଏ ଘର (ତାଳ ଖଣ୍ଡାଘର) ଭଡ଼ାନେଇ ରହିଲି। ବୋଉ ମୋ ପାଖରେ ଥିଲା। ବାଙ୍କିରେ ଓ ପଟାମୁଣ୍ଡାଇରେ ସରକାରୀ ଘର ପାଇଥିଲି। କଟକରେ ମୁଷ୍ଟିମେୟ ବଡ଼ ବଡ଼ିଆଙ୍କୁ ଛାଡ଼ିଦେଲେ ଛୋଟିଆଙ୍କ ପାଇଁ ସରକାରୀ ଘରର ପ୍ରଶ୍ନ ନଥିଲା। କଟକରେ ମୁଁ ଝାଞ୍ଜିରିମଙ୍ଗଳା, ହଜାରିଗଳି, ଉପର ତେଲେଙ୍ଗାବଜାର, ତଳ ତେଲେଙ୍ଗା ବଜାର (ପାଖାପାଖି ତିନି ଜାଗା) ବିଲେଇ ପରି ଛୁଆଙ୍କୁ ଜାକି ଘୂରିଲି। ଯେଉଁପରି ଘରେ ରହୁଥିଲି ସେ ଘରର ଚିତ୍ର ଏବେ ମନେ ପଡ଼ିଲେ ଦେହ ଶୀତେଇ ଉଠେ। ମୋର ଯୋଗ୍ୟତା ଓ ଚାକିରି ପାଇଁ ମୁଁ ସମସ୍ତଙ୍କ ପାଖରେ ହେୟ ବିବେଚିତ ହୋଇ ଆସିଛି। ପୁଣି ମୁଁ ରହୁଥିବା ଘରର ଚିତ୍ର ବର୍ଣ୍ଣନା କରି ମୋର ହେୟ ପଣକୁ ବଢ଼ାଇବି କାହିଁକି ? ତେବେ ଏହିପରି ଭାବରେ ସରକାରୀ ଘର ପାଇବା ପର୍ଯ୍ୟନ୍ତ ମୁଁ ସାଢ଼େ ଛଅବର୍ଷ କଟାଇଲି।

ଏହି ସମୟରେ ପୁଅର ନାମ ଲେଖା ରାଜାବଗିଚା ମାଇନର ସ୍କୁଲରେ ୪ର୍ଥ ଶ୍ରେଣୀରେ କରାଇଲି। ତାହାର ବୟସ ହୋଇଥିଲା ୬। ପୂର୍ବରୁ ମୁଁ ତାକୁ ଘରେ ଅକ୍ଷର ଶିକ୍ଷା, ସଂଖ୍ୟା ଲିଖନ, ବହିପଢ଼ା ଶିଖାଇଥିଲି। ଶିକ୍ଷକ ତାକୁ ପରୀକ୍ଷା କରି ୪ର୍ଥ ଶ୍ରେଣୀ ପାଇଁ ଉପଯୁକ୍ତ ବୋଲି କହିଲେ। ତା'ର ପଢ଼ାପଢ଼ି ଧାରାବାହିକ ଭାବରେ ଚାଲିଲା। ୫୭ ମସିହା ସେପ୍ଟେମ୍ବର ମାସ ୧୬ ତାରିଖରେ ମୋର ତୃତୀୟ ସନ୍ତାନ ପୁଅ କଟକ ମେଡ଼ିକାଲ୍‌ରେ ଜନ୍ମଲାଭ କଲା। ଆମର ଶାଶୁ ମହୋଦୟା ଆମକୁ ସାହାଯ୍ୟ କରିବା ପାଇଁ ତାଙ୍କ ସବା ସାନଝିଅ

ସରକୁ ଆମ ପାଖକୁ ପଠାଇଲେ। ଏ ପୁଅର ଜନ୍ମ ପରେ ମୋ ବୋଉ ଝାଡ଼ା ରୋଗରେ ଆକ୍ରାନ୍ତ ହେଲା। ମୁଁ ତାକୁ କଟକ ମେଡିକାଲରେ ଆଡମିସନ୍ କରାଇଲି। ସେମାନେ ତାକୁ କଲେରା ୱାର୍ଡରେ ରଖିଲେ। ୱାର୍ଡରେ ତାକୁ ଜଗି ଆଠଦିନ ରହିଲି। ରାତିରେ ଘରୁ ଖାଇଦେଇଯାଏ, ରାତିଯାକ ରହେ। ସକାଳୁ ଆସି ନିତ୍ୟକର୍ମ ସାରି ପୁଣି ଯାଏ। ଦୁଇଟା ବେଳକୁ ଆସି ଖାଇ ଦେଇ ଯାଏ। ଏହିପରି ଭାବରେ ଆଠଦିନ କଟିଲା। ଭାଇଙ୍କ ପାଖକୁ ଖବର ପଠାଇଲି- ସେ କଲେରା ୱାର୍ଡ କଥା ଶୁଣି ଡରିଲେ। ବୋଉ ଭଲ ହୋଇଗଲା। ଘରକୁ ଆସିଲା। କିନ୍ତୁ ଝାଡ଼ା ବା କଲେରା ରୋଗରୁ ବର୍ତ୍ତିଥିବା ଲୋକର ଚିକିତ୍ସା ଯେପରି ହେବାର କଥା ମୁଁ ତାହା ସେପରି କରିପାରିଲି ନାହିଁ। ମୋର ସେ ବିଷୟରେ କିଛି ଜ୍ଞାନ ନଥିଲା। ତାହା ଦେହ କ୍ରମଶଃ ଅବନତି ଆଡ଼କୁ ଗତି କଲା। ବେଶ୍ ଖିଆପିଆ କରୁଥିଲା। ଏପରିକି ପୁଅକୁ ମଧ୍ୟ ଦିନେ ଦିନେ ହଳଦୀ ଲଗେଇ ଗାଧୋଇ ଦିଏ। କିନ୍ତୁ ସେ ତା'ର ମୃତ୍ୟୁ ଆସନ୍ନ ବୋଲି ଜାଣି ପାରିଲା କି କଅଣ- ମତେ କହିଲା, "ଭାଇକୁ ଖବର ଦେ, ମତେ ଆସି ନେଇଯାଉ।" ବୋଧେ ସେ ଭାବିଲା ମରିବି ତ ଏ ଅପନ୍ତରାରେ କାହିଁକି ମରିବି। ଭାଇଙ୍କୁ ଖବର ପଠାଇଲି। ସେ ଆସି ତାକୁ ଗାଁକୁ ନେଇଗଲେ। ଗାଁରେ ଆଠଦିନ ପ୍ରାୟ ରହି ପ୍ରାଣତ୍ୟାଗ କଲା। ବଡ଼ବାପାଙ୍କ ପୁଅ ଭାଇ ସନ୍ଧ୍ୟାବେଳେ ପହଞ୍ଚି ତା'ର ମୃତ୍ୟୁ ଖବର ଆମକୁ ଜଣାଇଲେ। ଖବର ଜାଣି ପ୍ରଥା ଅନୁସାରେ ଆମେ ସ୍ୱାମୀ-ସ୍ତ୍ରୀ କାଠଯୋଡ଼ି ନଦୀରେ ସ୍ନାନ କରି ଆସିଲୁ। ବୋଉର ମୃତ୍ୟୁରେ ଦୁଃଖ କରିବାର ଅବସର ମୋ ପାଇଁ ନଥିଲା। ମୁଁ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲି। କିପରି ତା'ର ଶୁଦ୍ଧିକ୍ରିୟା କରିବି। ଅନ୍ତତଃ ପାଞ୍ଚଶହ ଟଙ୍କା ଦରକାର। ମୋ ପାଖରେ ପାଞ୍ଚଟଙ୍କାର ବି ଭରସା ନାହିଁ। ଭାବିଲି ଗାଁର ଲୋକମାନେ ସମସ୍ତେ ତ ସ୍ୱଚ୍ଛଳ ନୁହନ୍ତି। ଧନୀ, ଗରିବ ଅଛନ୍ତି। ତାହା ଭିତରେ ଶୁଦ୍ଧି, ଶ୍ରାଦ୍ଧ, ବିବାହ, ବ୍ରତ ସବୁ କର୍ମ ଚାଲିଛି। କିପରି ହେଉଛି ? ପରସ୍ପର ସାହାଯ୍ୟ, ଧାର ଉଧାର ମାଧ୍ୟମରେ ଏସବୁ କାମ ହେଉଛି। ମୁଁ ସେହିପରି ଗାଁର ଜଣେ ଲୋକ। ମୋ କାମ କାହିଁ କି ନ ହେବ ? ଏପରି ଭାବି ସ୍ଥିର କଲି ଏଇ ରାତି ରାତି ଗାଁକୁ ଚାଲିଯିବି। ସ୍ତ୍ରୀଙ୍କୁ ମୋର ମନୋଭାବ ଜଣାଇଲି। ସେ ଏଥିରେ ଆଦୌ ରାଜି ହେଲେ ନାହିଁ। କହିଲେ, "ଯାହା କରିବାର ଏଇଠି କର। ଗାଁରେ କେହି ପଚାରିବେ ନାହିଁ।" ମୁଁ ମୋ ମତରେ ଦୃଢ଼ ରହିଲି ଏବଂ ସାଙ୍ଗେ ସାଙ୍ଗେ ଛୁଆ ପିଲାଙ୍କୁ ଧରି ଆସିଥିବା ଭାଇଙ୍କ ସାଙ୍ଗରେ ଷ୍ଟେସନକୁ ବାହାରିଲି। ସେତେବେଳକୁ ଶୀତ ଆରମ୍ଭ ହୋଇଗଲାଣି। କଟକ ଷ୍ଟେସନରେ ଟ୍ରେନ୍‌କୁ ଅପେକ୍ଷା କରି କିଛି ସମୟ ବସିଲୁ। ଧାନମଣ୍ଡଳରେ ଓହ୍ଲାଇ ସକାଳ ଯାଏ ଷ୍ଟେସନ୍‌ରେ ପଡିଲୁ। ସେ ଭାଇ ଗାଁକୁ ଯାଇ ବଳଦଗାଡ଼ି ପଠାଇଲେ। ଆମେ ଗାଁକୁ ଗଲୁ। ଭାଇଙ୍କୁ ସାଙ୍ଗରେ ନେଇ କେତେ ଲୋକଙ୍କ ଦ୍ୱାରସ୍ଥ ହେଲି। ତାହା ଭିତରେ ଆମ ଗାଁର ମାମଲତକାର ଓ ଧନୀ ଲୋକ ହେମ ସାହୁ ମୁଖ୍ୟ। ସେ ନାସ୍ତି ବାଣୀ ଶୁଣାଇଲେ। ତା ସଙ୍ଗେ କହିଲେ, 'ତୁମେ ଟଙ୍କା କିପରି ପରିଶୋଧ କରିବ ?' ମୁଁ ହତାଶ ହେଲି। ସ୍ତ୍ରୀଙ୍କ କଥା ସତ ହେଲା। ମୁଁ କଟକ ଫେରି ଆସିଲି। ପିଲାମାନେ ଗାଁରେ ରହିଲେ।

ପ୍ରଥମେ ମୁଁ ସ୍ତ୍ରୀଙ୍କର ଥିବା ସର୍ବଶେଷ ଅଳଙ୍କାର ହାରଟି ବିକିଲି। ଏଇ ହାରଟି ତାଙ୍କର ପୁରୁଣା ହାରକୁ ଭାଙ୍ଗି ନୂଆ କରି ଗଢ଼ା ଯାଇଥିଲା। ସେହି ସମୟରେ ସେ ବେମାର ପଡ଼ିଲେ। ଦିନକ ପାଇଁ ବି ସେ ହାରକୁ ସେ ପିନ୍ଧି ନଥିଲେ। ଲୁଗାପଟା ଯାହା ଦରକାର ତାହା ଜଣଙ୍କ ମାର୍ଫତରେ ଗୋଟିଏ ଦୋକାନରୁ ବାକି ଆଣିଲି। ସଉଦାପତ୍ର ଯାହା ଦରକାର ସେ ସବୁ ମଧ୍ୟ ଗୋଟିଏ ଦୋକାନରୁ ବାକି ଆଣିଲି। ପ୍ରାୟ ଶଏ ଟଙ୍କା ଜଣେ ବନ୍ଧୁଙ୍କ ଠାରୁ ଧାର ଆଣିଲି। ଏସବୁ ଧରି ଗାଁକୁ ଗଲି। ଶୁଦ୍ଧିକ୍ରିୟା ଯଥାବିଧି ପାଳିତ ହେଲା।

ସ୍ତ୍ରୀଙ୍କର ବେମାର ପଡ଼ିବା ଓ ବୋଉର ଶୁଦ୍ଧିକ୍ରିୟା ଅବସରରେ ମୁଁ ସ୍ତ୍ରୀଙ୍କର ସମସ୍ତ ସୁନା ଅଳଙ୍କାର ବିକ୍ରୟ କରିଥିଲି। ମଝିରେ ତାଙ୍କ ପାଇଁ ଗୋଟିଏ ହାର କିଣିଥିଲି। ସେଇଟିକୁ ମଧ୍ୟ ୨ୟ ଝିଅ ବାହାଘର ବେଳେ ବିକିଦେଲି। ସେ ଜୀବନର ଅଧିକାଂଶ ଭାଗ ବିନା ଅଳଙ୍କାରରେ କଟାଇଛନ୍ତି। ସେଥିପାଇଁ ସେ କେବେ ଗ୍ଳାନି ଅନୁଭବ କରିନାହାନ୍ତି କି କେବେ ଦୋଷାରୋପ କରି ମତେ ଗାଳିମନ୍ଦ କରିନାହାନ୍ତି। ସମୟକ୍ରମେ ତାଙ୍କ ପାଇଁ ଗୋଟିଏ ଭଲ ହାର, ହାତକୁ ୨ପଟ ବାଲା, ୩ହଳ ଭଲ ଇଅର ରିଙ୍ଗ୍ ଓ ଦୁଇଟି ମୁଦି ବ୍ୟବସ୍ଥା କରାଯାଇଥିଲା। ଗୋଟିଏ ମୁଦିରେ ନିଜ ନାମ 'ଜାନକୀ' ଲେଖାଯାଇଥିଲା। ସେ ଏହି ଅଳଙ୍କାର ଗୁଡ଼ିକୁ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟବହାର କରୁଥିଲେ। ଦେହରୁ କେବେ ଓହ୍ଲାନ୍ତି ନାହିଁ।

ପ୍ରଥମ ପୁଅ ଜନ୍ମପରେ ଭାଇ ମରିଥିଲା। ଦ୍ୱିତୀୟ ପୁଅର ଜନ୍ମପରେ ବୋଉ ମଲା। ଏବେ ସେ ପୁଅ ନିଜେ ବିପନ୍ନ। ତାକୁ ନିମୋନିଆ– ତା ଅବସ୍ଥା ସାଂଘାତିକ। ଶୁଦ୍ଧିର ବାରଦିନ ସକାଳୁ ମୁଁ ମୋ ପୁଅକୁ ଧରି କଟକ ଆସିଲି। ବଳଦଗାଡ଼ିରେ ଆସି ଧାନମଣ୍ଡଳ ଷ୍ଟେସନ୍‌ରେ ପହଞ୍ଚିଛି, ଟ୍ରେନ୍ ଛାଡ଼ିଦେଲା। କ'ଣ ବା କରିବି। ପୁଣି ଟ୍ରେନ୍ ଯାଇ ରାତି ୧୦କି ଏଗାରରେ। ଦିନଯାକ ସେଠାରେ ପଡ଼ିବୁ। ପୁଣି ପୁଅର ଅବସ୍ଥା, ଚିକିତ୍ସାରେ ବିଳମ୍ବ ସହ୍ୟ କରିବ ତ। ଉପାୟାନ୍ତର ନ ଦେଖି ସେଠାରୁ ୨କି.ମି. ଦୂର ବଡ଼ଚଣା ଡାକ୍ତରଖାନାକୁ ଚାଲିଲି। ମୋର ଭାବନା ଜଣେ ଡାକ୍ତର ତାକୁ ଶୀଘ୍ର ଦେଖୁ। ବଡ଼ଚଣାରେ ପହଞ୍ଚିଲା ବେଳକୁ ଡାକ୍ତର ଡାକ୍ତରଖାନା ବନ୍ଦ କରୁଥିଲେ। ସେ ଜଣେ ମୁସଲମାନ୍ ଲୋକ। ଆମକୁ ପଚାରିଲେ ପିଲାକୁ ଏଠି ଚିକିତ୍ସା କରିବ। ଆମକୁ ଏପରି ପଚାରିବାର କାରଣ ସେଠାକୁ କେହି ଏପରି ରୋଗୀ ନେଇ ଯାଆନ୍ତି ନାହିଁ। ଯାହା ହେଉସେ ଆମପାଇଁ ସବୁ ବ୍ୟବସ୍ଥା କରିଦେଲେ। ଆମକୁ ଗୋଟିଏ ରୁମ୍‌ଦେଲେ। ଆମ ସାଙ୍ଗରେ ମୋର ୧୦/୧୧ ବର୍ଷର ଗୋଟିଏ ଝିଆରୀ ଯାଇଥିଲା। ଡାକ୍ତର ପ୍ରଥମେ ତା ଛାତିରେ ଭିକ୍ସ ମାଲିସ୍ କରିବାକୁ ଦେଲେ। ସନ୍ଧ୍ୟାବେଳକୁ ଗୋଟିଏ ଇନ୍‌ଜେକ୍‌ସନ୍ ଦେଲେ। ଏହିପରି ଔଷଧ ଇନ୍‌ଜେକ୍‌ସନ୍ ଦିଆଗଲା। ସେ ଜାଗାଟି ବଡ଼ ଅପନ୍ତରା। ଦୂରରେ ଗୋଟିଏ ଚା' ଦୋକାନ ଥିଲା। ସେଠାରୁ କିଛି ବରା ପକୁଡ଼ି ଆଣିଲି। ସେଇଆକୁ ଖାଇ ଆମେ ସେଦିନ କଟାଇଲୁ। ତହିଁ ଆରଦିନ ଶୁଦ୍ଧିକ୍ରିୟା ସମ୍ପୂର୍ଣ୍ଣ ସରିବାରୁ ଭାଇ ଆସିଲେ। ସେତେବେଳେ ସେ ଦଫାଦାର ଥିଲେ। ଥାନା ଡାକ୍ତରଖାନାକୁ ସଂଲଗ୍ନ। ଭାଇ ସେଠାରେ ରୋଷାଇ କରି ଆଣି ଆମକୁ ଖାଇବାକୁ ଦିଅନ୍ତି। ଆମେ ସେଠାରେ ୭/୮ ଦିନ ରହିଲୁ। ପୁଅ ସମ୍ପୂର୍ଣ୍ଣ ଭଲ ହୋଇଗଲା ଆମେ ଘରକୁ ଆସିଲୁ। ସ୍ତ୍ରୀ ସାନପୁଅ ଓ ଝିଅକୁ ଧରି ଗାଁରେ ରହିଲେ। ମୁଁ ଓ ବଡ଼ପୁଅ କଟକ ଆସିଲୁ। ଗଲାବେଳେ ଯେଉଁ ଘରେ ଥିଲି ସେ ଘରେ ଆଉ ରହିଲି ନାହିଁ। ନିକଟରେ ଆଉ ଗୋଟିଏ ଘରେ ପୁଅ ଓ ମୁଁ ରହିଲୁ। ହୋଟେଲରେ ଖାଇଲୁ। ସ୍ତ୍ରୀ ସେ ପୁଅକୁ ରଖି ଛଅମାସ ଗାଁରେ ରହିଲେ।

ଏହାର ବହୁପୂର୍ବରୁ ଗୋଟିଏ ପ୍ରକାଣ୍ଡ ଝଡ଼ ଅପ୍ରତ୍ୟାଶିତ ଭାବରେ ମୋ ଉପରେ ପ୍ରବାହିତ ହୋଇ କିଛି କ୍ଷତି ନ କରି ଅପସରି ଗଲା। ତାହା ଏଠାରେ ଉଲ୍ଲେଖନୀୟ। ଝଡ଼ଟି ମୋ ଦାନା ପାଣିକୁ ନେଇ। ଟାଉନ୍ ପ୍ଲାନିଂ ଅଫିସ୍‌ରେ ଜଏନ୍ କରିବାର ପ୍ରାୟ ଅଢ଼େଇ ମାସ ପରେ ସରକାରଙ୍କର ଆଦେଶନାମା ଆସିଲା, ଏ ଅଫିସ୍‌କୁ ଉଠାଇ ଦିଆଯିବ। ମୋ ମୁଣ୍ଡରେ ବଜ୍ରପଡ଼ିଲା। ମୁଁ ତ କୌଣସି ପୋଷ୍ଟରେ ସ୍ଥାୟୀ ହୋଇ ନାହିଁ। ଅର୍ଥାତ୍ ମୋର Lien ନାହିଁ। ବେକାର ହୋଇଯିବି। ଏ ଅବସ୍ଥାରେ ଏ ଦଶା ଭଗବାନ କାହିଁକି ଦେଉଛନ୍ତି। ସ୍ତ୍ରୀ ପାଖରେ ନ ଥିଲେ। ସେ ପିଲା ଦୁହିଁଙ୍କୁ ନେଇ ମୋ ଭଉଣୀ ଘର ଅଣ୍ଡିଆ ଯାଇଥିଲେ। ତାଙ୍କ କଥା ନମାନି ପଟାମୁଣ୍ଡାଇ ଚାକିରି

ଛାଡ଼ି ଆସିଛି । ସେ ଥିଲେ କଟାଘାରେ ଚୁନ ଦେଲାପରି ନିଶ୍ଚୟ ଦ୍ୱିପଦ ହିତବାଣୀ ଶୁଣାଇଥା'ନ୍ତେ ! ଚିନ୍ତାରେ ରାତିଯାକ ନିଦ ହେଲାନାହିଁ । କାହାକୁ ଏ ଦୁଃଖ କହିବି-କିଏ ଶୁଣିବ । ବୋର୍ଡ ଅଫ୍ ରେଭିନ୍ୟୁର ଅର୍ଥ ପରାମର୍ଶଦାତା କେ.ସି. ଜେନାଙ୍କ ବ୍ୟତୀତ ସରକାରୀ ସ୍ତରରେ ମୋତେ ଆଉ କେହି ଜାଣନ୍ତି ନାହିଁ । ଠିକ୍ କଲି ତାଙ୍କୁ ଦୁଃଖ ଜଣାଇବି । ତାଙ୍କ ଘର ମୁଁ ରହୁଥିବା ଘରର ପ୍ରାୟ ସଂଲଗ୍ନ । ସକାଳେ ତାଙ୍କ ପାଖକୁ ଗଲି ଏବଂ ଦୁଃଖ ନିବେଦନ କଲି । ସେ ବଡ଼ ଦୁଃଖ କଲେ ଏବଂ ଆଶ୍ୱାସନା ଦେଲେ-ତୁମେ ବ୍ୟସ୍ତ ହୁଅନା-କଅଣ ହେଉଛି ମତେ କହିବ । ଏ ପ୍ରକାର ଭରସା-ପୂର୍ଣ୍ଣ ଆଶ୍ୱାସନା ବାଣୀ ତାଙ୍କ ମୁହଁରୁ ଶୁଣି ଆଶ୍ୱସ୍ତ ହେଲି । ମନ ଟିକେ ଥୟ ହେଲା । ଏ ଆଦେଶନାମା ସରକାରୀ ସ୍ତରରେ ଘଣ୍ଟା ଚକଟା ହୋଇ ସ୍ଥିର ହେଲା-ଅଫିସ୍‌କୁ ଛୋଟକାଟରେ ରଖିବେ । ଷ୍ଟାଫ୍ ଓ ଅନ୍ୟାନ୍ୟ ବିଷୟ କାଣ୍ଟଛାଣ୍ଟ କରାଗଲା । ମାତ୍ର ମୁଁ ଅକ୍ଷତ ରହିଲି । ଏକଥା ଜେନା ସାହେବଙ୍କୁ ଜଣାଇଲି । ସେ କହିଲେ-ହଉ, ରହିଲ ତ- ଥା । ମୁଁ ରହିଲି ଏବଂ ଭଲରେ ୨ବର୍ଷ କଟିଗଲା । ପୁଣି ସେହିପରି ଅଫିସ୍ ଉଠାଇଦେବା ଆଦେଶ ଆସିଲା । ଜେନା ସାହେବଙ୍କୁ ଜଣାଇଲି । ସେ ହସିଲେ ଏବଂ କହିଲେ- ''ହଉ, ତମେ ପଳାଇ ଆସ । କଲେକ୍ଟରଙ୍କୁ ଗୋଟିଏ ଦରଖାସ୍ତ ଦେଇଦିଅ ।'' ତାହାପରେ ଯାହା କରିବାର କଥା ମୁଁ କରିବି ।'' ମୁଁ ତାଙ୍କୁ ଦୃଢ଼ଭାବରେ କହିଲି, ''ହେଡକ୍ଲର୍କ ପୋଷ୍ଟରେ ମୁଁ ଯିବିନାହିଁ । ମୋତେ ଅଡ଼ିଟର ପୋଷ୍ଟରେ ଆଣନ୍ତୁ ।'' ସେ କହିଲେ ମୋର ସେଥିରେ ଆପତ୍ତି ନାହିଁ, ମାତ୍ର ସେ ଚାକିରିରେ ଓଡ଼ିଶାସାରା ଟୁର୍ କରିବାକୁ ପଡ଼ିବ । ତମର ସ୍ତ୍ରୀ ବେମାର । ସେ ଚାକିରିରେ ତମେ ପାରିବ ନାହିଁ । ମୁଁ କହିଲି, ''ମୁଁ କଷ୍ଟ କରି କୌଣସି ପ୍ରକାରେ ଚଳାଚଳ କରିବି, ମୋତେ ସେହି ଚାକିରି ଦିଅନ୍ତୁ ମନ ଘେନୁ ନଥିବା କାମକୁ ମୁଁ ଯିବିନାହିଁ'' ସେ ଏତେ ଭଲଲୋକ ପୁଣି ମତେ ଏତେ ଭଲ ପାଉଥିଲେ ଯେ, ମୋ ଉପରେ ବିରକ୍ତ ନ ହୋଇ କହିଲେ, ''ହଉ, ତୁମେ ଦରଖାସ୍ତ ଦିଅ, ମୁଁ ନିଯୁକ୍ତି ଅର୍ଡର ପଠାଇଦେବି । ଅସୁବିଧା ହେଲେ ମତେ କହିବ ନାହିଁ ।'' ତାଙ୍କର ଅର୍ଡର ପାଇ ମୁଁ ଅଡିଟର ପୋଷ୍ଟରେ ୫୯ ମସିହା ଅଗଷ୍ଟ ମାସରେ ଜଏନ୍ କଲି । ଅଫିସ୍ ଆସେ ଯାଏ । ପ୍ରାୟ ମାସେ ବିତିଗଲା । ମୁଁ କ'ଣ କରୁଛି ନ କରୁଛି କେହି ପଚାରନ୍ତିନାହିଁ । ମୋର କ'ଣ କାମ ମୁଁ ଜାଣିପାରିଲି ନାହିଁ । ହଠାତ୍ ଦିନେ ଶୁଣିଲି ବାଣପୁର ତହସିଲ୍ ଅଫିସ୍ ଅଡିଟ୍ ପାଇଁ ମତେ ବାଣପୁର ପଠାଯିବ । ସତକୁ ସତ ଅର୍ଡର ପାଇଗଲି । କ'ଣ କରିବି, ସ୍ତ୍ରୀ ପାଖରେ ନଥିଲେ । ସେ ଛୁଆ ଦୁଇଟିକୁ ଧରି ବାପଘର ଯାଇଥିଲେ । ବଡ଼ପୁଅ ମୁଁ ଏଠି ଥିଲୁ । ଅଫିସରଙ୍କୁ ତ ମୋର ସୁବିଧା ଅସୁବିଧା ନ କହିବାକୁ ସେ ପୂର୍ବରୁ ତାଗିଦ୍ କରିଛନ୍ତି । ଅଗତ୍ୟା ସ୍ତ୍ରୀଙ୍କ ପାଖକୁ ଚିଠିଟିଏ ଲେଖିଦେଇ ପୁଅକୁ ଏକା ଛାଡ଼ି ମୁଁ ବାଣପୁର ଗଲି । ତା ଖବର ବୁଝିବା ପାଇଁ ଜଣେ ପରିଚିତ ଶିକ୍ଷକଙ୍କୁ କହିଗଲି ।

ଜୀବନ ସଂଗ୍ରାମ-ଚାକିରିର ସୁରକ୍ଷା- ଅଫିସରଙ୍କ ତାଗିଦ୍ ଆଉ ମୋର ପ୍ରଦତ୍ତ ବଚନ-ମୋତେ ବାଧ କଲା ଏ ନିଷ୍ଠୁର କର୍ମ କରିବା ପାଇଁ । ମୁଁ ଦାୟିତ୍ୱହୀନ ନୁହେଁ-ନିଷ୍ଠୁର ନୁହେଁ କି ପରିସ୍ଥିତି ବିଷୟରେ ଅଜ୍ଞ ନୁହେଁ । ଭଗବାନଙ୍କ ଉପରେ ଭରସା ରଖି କର୍ତ୍ତବ୍ୟରେ ଅଗ୍ରସର ହେଲି । ସ୍ତ୍ରୀ ଚିଠି ପାଇ ଆସିଲେ ସାତ ଆଠଦିନପରେ । ପୁଅ ହୋଟେଲରେ ଖାଇ ସବୁଦିନେ ସ୍କୁଲକୁ ଯାଇ ଚଳିଲା । କିଛି ଅସୁବିଧା ହୋଇନାହିଁ ।

ମୋର ବିଶ୍ୱାସ-ସଦ୍ ମନ ନେଇ ସଦ୍‌କର୍ମରେ ପ୍ରବୃତ୍ତ ହେଲେ ଭଗବଦ୍‌କୃପା ତମ ପଛେପଛେ ରହିବ ।

ବାଣପୁର ଯିବା ପୂର୍ବରୁ ମୁଁ ପୁଅକୁ କହିଲି ମୋର ସାଙ୍ଗ ନକୁଳ ବାବୁଙ୍କ ଘରେ ବୋଉ ଆସିବା ପର୍ଯ୍ୟନ୍ତ ରହ । ସେ ମନାକଲା ଯଦି ଓ ସେ ତାଙ୍କୁ ଭଲକରି ଜାଣେ ଏବଂ ପୂର୍ବରୁ ତାଙ୍କ ଘରକୁ ଯାଇଛି । ନିଜ ଘର

ଅସୁବିଧାକୁ ଡରି ପରଘରେ ରହି ସୁବିଧା ଭୋଗିବାକୁ ସେ ବୋଧେ ପସନ୍ଦ କଲାନାହିଁ। ପୁଣି ନିଜ ଅସୁବିଧାକୁ ସାହସସହ ସାମ୍ନା ନକରି ହଟିଯିବା ଉଚିତ୍ ନୁହେଁ ବୋଲି ବୋଧେ ସେ ଭାବିଲା। ଏପରି କାମଦ୍ୱାରା ସେ ତା'ର ସ୍ୱାଧୀନ ମନୋବୃତ୍ତି ଓ ଆତ୍ମସଚେତନତାର ପରିଚୟ ଦେଲା। ପ୍ରକୃତରେ ଯେଉଁମାନେ ବଡ଼ ହୋଇଛନ୍ତି ସେମାନଙ୍କର ବଡ଼ ହେବାର ସୂଚନା ପିଲାଦିନରୁ ମିଳିଥାଏ। ମୁଁ ଏବେ ଦେଖୁଛି ଏ ପୁଅ (୫୦ ବର୍ଷ) ଅତିମାତ୍ରାରେ ସ୍ୱାଧୀନଚେତା। ଶଙ୍କରାଚାର୍ଯ୍ୟ ଆଠବର୍ଷରେ ଘରଛାଡ଼ି ସନ୍ୟାସୀ ହୋଇଥିଲେ। ମା କାନ୍ଦିବାରୁ କହିଲେ, ''ତୁ ବ୍ୟସ୍ତ ହୋନା- ତୁ ମୋତେ ଯେତେବେଳେ ସ୍ମରଣ କରିବୁ-ମୁଁ ତୋ ପାଖରେ ଉପସ୍ଥିତ ହେବି।'' ଯାକୁ ତ ଆଠବର୍ଷ। କଟକ ସହରରେ ଗୋଟିଏ ପିଲା ଗୋଟିଏ ଘରେ ଏକୁଟିଆ ରହି ତାହାର କର୍ମ ସମ୍ପାଦନ କରି, ୭/୮ ଦିନ ଚଳିବ ଅଦ୍ଭୁତ ସାହସିକତା, ମନୋବଳ ଓ ଧୈର୍ଯ୍ୟର ପରିଚୟ ଦିଏ। ମୁଁ ଭାବେ ଏ କ'ଣ ଶଙ୍କରାଚାର୍ଯ୍ୟ କି ?

ଆଉ ଗୋଟିଏ ଘଟଣାର ଠିକ୍ ସମୟ ମନେ ନଥିଲେ ମଧ୍ୟ ଘଟଣାର ପରିଣତି ଆମ ପାଇଁ ଦୁଃଖଦ ଥିଲା। ତାହା ଉଲ୍ଲେଖନୀୟ। ପୁଅର ପ୍ରଥମାଷ୍ଟମୀ ପାଇଁ ଶ୍ୱଶୁର ପନ୍ଦରଟଙ୍କା ପ୍ରତିବର୍ଷ ମନିଅର୍ଡର କରି ପଠାନ୍ତି। ସେ ବର୍ଷ ମନିଅର୍ଡରଟି ବସା ଠିକଣାରେ ଆସିଥିଲା। ମୁଁ ଅଫିସ୍‌ରେ ଥିଲାବେଳେ ପୋଷ୍ଟମ୍ୟାନ୍ ବସାକୁ ଆସିଲା। ସ୍ତ୍ରୀ ସେ ମନିଅର୍ଡର ନେବେନାହିଁ ବୋଲି ମନା କରିଦେଲେ। ମନିଅର୍ଡର ଫେରିଗଲା। ମୁଁ ଘରକୁ ଆସି ସ୍ତ୍ରୀଙ୍କର ଏ ବ୍ୟବହାର ଶୁଣି ଦୁଃଖିତ ହେଲି। ତାଙ୍କର ବାପାଙ୍କ ଉପରେ ରାଗ ବା ଅଭିମାନ କାହିଁକି ହେଲା ଯେତେ ପଚାରିଲେ ବି ସେ ପ୍ରକାଶ କଲେ ନାହିଁ। ତାଙ୍କର ଏଇଟା ପ୍ରକୃତିଗତ ଆଚରଣ। ତେବେ ଯାହା ହେବାର ହୋଇଗଲାଣି। ଆଉ କିଛି କରିବାର ନାହିଁ। କିନ୍ତୁ ଆଶ୍ଚର୍ଯ୍ୟର କଥା-ଶ୍ୱଶୁର ଘର ଏଥିରେ କିଛି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ। ମନିଅର୍ଡର ଫେରାଇ ଦେବାର କାରଣ ମଧ୍ୟ ଅନୁସନ୍ଧାନ କଲେ ନାହିଁ। ସେମାନେ ମୋତେ ଭଲ ପାଆନ୍ତି ନାହିଁ। ଭାବିନେଲେ ଏ କାମ ମୁଁ କରୁଛି। ତାଙ୍କର ବୋଧେ ରାଗ ବଢ଼ିଗଲା। ସେ ଚୁପ୍‌ଚାପ୍ ରହିଲେ। ସେହି ଘଟଣା ପରଠୁ ସେମାନେ ଆମକୁ ପରିତ୍ୟାଗ କଲେ।

ମୁଁ ତ ଜନ୍ମରୁ  ନିଃସ୍ୱ ଓ ଅସହାୟ। ବାହାଘର ପରେ ଭାବିଲି ମତେ ଗୋଟାଏ ସହାୟ ମିଳିଲା। କିନ୍ତୁ ସହାୟକଙ୍କ ଆଚରଣ ଏହି ପ୍ରକାର ଥିଲା। ଜମିନେଇ ତାଙ୍କର ଆଚରଣ ପୂର୍ବରୁ କହିଛି। ସ୍ତ୍ରୀଙ୍କର ବେମାର ଆରମ୍ଭ ପରେ କାଳେ ତାଙ୍କ ଉପରେ କିଛି ବୋଝ ପଡ଼ିଯିବ, ଏହା ଆଶଙ୍କା କରି ସେ ଆମଠାରୁ ଦୂରେଇ ଯିବାପାଇଁ ଚାହୁଁଥିଲେ। ଆଳ ଖୋଜୁଥିଲେ। ଆଳ ମିଳିଗଲା। ତାଙ୍କ ମନୋବାଞ୍ଛା ପୂର୍ଣ୍ଣ ହେଲା। ଏହି ସମୟରେ ସେ ଗୋଟିଏ ଝିଅ ପୁରୀରେ ବାହାକଲେ। ଝିଅଘରକୁ ଧାଉଡ଼ି ଚାଲିଲା। ବାପ ଆସିଲେ, ମା ଗଲା, ମା ଆସିଲେ, ଭାଇ ଗଲା, ଭାଇ ଆସିଲେ ଭଉଣୀଗଲା। ଗୋଟିଏ ଭଉଣୀ ବାହା ନ ହୋଇ ବାପଘରେ ରହି ମାଲିକାଣୀ ସାଜିଛି। ତାଙ୍କର ଏହି ପ୍ରକାର କାମ କଟକ ମଧ୍ୟଦେଇ ଚାଲିଥାଏ। ପରେ ପୁରୀ ଝିଅଟି ଆତ୍ମହତ୍ୟା କରି ମରିଗଲା। ଶାଶୂ ଶ୍ୱଶୁର ଉଭୟ ଏବେ ମୃତ। ଚାରିଭାଇ ଚାକିରି ବାକିରି କରି ଭଲରେ ଅଛନ୍ତି। ଆମ ସହିତ ସମ୍ବନ୍ଧ ଏବେ ପୁନଃ ସ୍ଥାପିତ ହୋଇଛି। କିନ୍ତୁ ତାହା ସାଧାରଣ ବନ୍ଧୁବାନ୍ଧବ ପରି। ମୋର ଶ୍ୱଶୁରଘର ଆଚରଣ ମତେ ଭଲ ନ ଲାଗିଲେ ମଧ୍ୟ ମୁଁ ସେଥିପାଇଁ କେବେ ଦୁଃଖ କରିନାହିଁ। କିମ୍ବା ପ୍ରକାଶ୍ୟରେ ପ୍ରତିକୂଳ ମନ୍ତବ୍ୟ ଦେଇନାହିଁ। ସେ ଗାଁକୁ ମୁଁ ଯାଏନାହିଁ। କାରଣ କାହାଠାରୁ କିଛି ଗ୍ରହଣ ନ କରିବା ମୋର ନୀତି।

ମୋର ଜୀବନର ଗତିପଥ ଖାଲ ଖମାରେ ପୂର୍ଣ୍ଣ। ସରଳ ପଥ ଟିକେ ଟିକେ ଥାଏ। ବୋର୍ଡ ଅଫ୍ ରେଭିନ୍ୟୁରେ ଢଏନ୍ କଲାପରେ କିଛିଦିନ ଭଲରେ କଟିଲା। ଜେନା ସାହେବ ମତେ ଟୁର୍‌ରେ ପଠାଇଲେ ନାହିଁ। ବାଣପୁରରୁ ଫେରାଇ ଆଣି ହେଡ୍ ଅଫିସ୍‌ରେ ରଖିଲେ। ଭଗବାନଙ୍କ ଦୟା ତାଙ୍କ ଜରିଆରେ ମତେ ପ୍ରାପ୍ତ ହେଉଥିଲା। ସେ ଏ ବ୍ୟବସ୍ଥା ସ୍ୱତଃ ପ୍ରବୃତ୍ତ ହୋଇ କଲେ। ମୋର ତାଙ୍କୁ ଅନୁରୋଧ କରିବାରା ଚାରା ନଥିଲା। ଏହି ସମୟରେ ସ୍ତ୍ରୀଙ୍କର ପୁଣି ଦେହ ଖରାପ ହେଲା। ମୁଣ୍ଡ ବୁଲାଇଲା, ବାନ୍ତି ହେଲା, ମୁଁ ଆମ୍ବୁଲାନ୍ସ ଡକାଇ ତାଙ୍କୁ ମେଡିକାଲ ନେଲି। ସେଠାରେ ସେ ଅଚେତା ହୋଇଗଲେ। ଏହି ଅଚେତା ଛଅଦିନ ରହିଲା ପରେ ଚେତା ଆସିଲା। ପୂର୍ଣ୍ଣ ଚେତା ଆସିବାକୁ ଆହୁରି ୩/୪ ଦିନ ଲାଗିଲା। ଚେତା ଫେରାଇବା ପାଇଁ କିଛି ଔଷଧ ବ୍ୟବସ୍ଥା ନାହିଁ। ତାହା ଆପେ ଆସିବ ବା ନ ଆସିବ। ଘଣ୍ଟାକୁ ଘଣ୍ଟା ଡାକ୍ତର ନାଡ଼ି ଦେଖୁଥାନ୍ତି। ମୁଁ ୱାର୍ଡ ବାହାରେ ପ୍ରାୟ ଦିନରାତି ବସିଥାଏ କେବଳ ମୃତ୍ୟୁ ଘୋଷଣାକୁ ଅପେକ୍ଷା କରି। ବସାରେ ପିଲା ତିନୋଟି ହୋଟେଲରେ ଖାଇ ରହିଥା'ନ୍ତି। ମୁଁ ବି ହୋଟେଲ୍‌ରେ ଖାଇଦିଏ। ମୋର ନଅବର୍ଷ ବୟସ୍କ ବଡ଼ ପୁଅର ଦାୟିତ୍ୱରେ ଏମାନେ ଥାଆନ୍ତି। ଅଚେତା ହେବା ଅବସ୍ଥାରେ ସେମାନେ ରୋଗ ନିରୂପଣ କରି ସାରିଥିଲେ। ଚେତା ଆସିବା ପରେ ଚିକିତ୍ସା ଆରମ୍ଭ ହେଲା। ପ୍ରତିଦିନ ଇନ୍‌ଜେକ୍‌ସନ୍ ଔଷଧ ଦିଆଗଲା। ପ୍ରାୟ ୮୦ ଦିନ ପରେ ତାଙ୍କୁ ଡିସ୍‌ଚାର୍ଜ କଲେ। ସେ ବେଶ୍ ଭଲ ହୋଇ ଯାଇଥିଲେ। ଘରକୁ ଆସିଲେ। ପୁଣି ଆମ ସଂସାର ମୁରୁକି ହସିଲା। ପ୍ରାୟ ତିନିମାସ ଆମେ ହୋଟେଲ୍‌ରେ ଖାଇ ଚଳିଲୁ। ଏହା ୬୦ ମସିହାର ଘଟଣା। ୬୧ ମସିହା ନଭେମ୍ବର ୨୯ ତାରିଖ ଦିନ ମୋର ୪ର୍ଥ ସନ୍ତାନ ଝିଅ କଟକ ମେଡିକାଲରେ ଜନ୍ମ ହେଲା। ଏହି ସମୟରେ ସ୍ତ୍ରୀ ଛୁଆ ପିଲାଙ୍କୁ ନେଇ ଗାଁକୁ ଯାଇଥିଲେ। ଆସିଲାବେଳେ ମୋର ବଡ଼ବାପାଙ୍କ ପୁଅ ଭାଇଙ୍କର ୧୧/୧୨ ବର୍ଷର ଗୋଟିଏ ଝିଅକୁ ସାଙ୍ଗରେ ଆଣିଥିଲେ। ସେ ଆମ ପାଖରେ ପାଞ୍ଚବର୍ଷ ରହିଲା ଓ ଆମକୁ ବହୁତ ସାହାଯ୍ୟ କଲା। ସେ ଝିଅ ଏବେ ତା ଶାଶୁ ଘରେ ସ୍ୱାମୀ ଦୁଇ ପୁଅଙ୍କ ସହ ଭଲରେ ଅଛି। ମୋର ଦ୍ୱିତୀୟ ଝିଅକୁ ପ୍ରାୟ ଦେଢ଼ବର୍ଷ ହୋଇଥିବା ବେଳେ ମୋତେ ଗୋଟିଏ ସରକାରୀ କ୍ୱାର୍ଟର ମିଳିଗଲା। ତୁଳସୀପୁର ଗୋରାକବର ନିକଟରେ ତିନିତାଲା ବିଶିଷ୍ଟ ଗୁଡ଼ିଏ ଫ୍ଲାଟ ଘର ସରକାର ତିଆରି କଲେ। ମୋତେ ମିଳିଥିବା ଘର ତିନିତାଲାରେ। ଦୁଇବଖରା ଘର, ରୋଷେଇ ଘର, ଦୁଇଟି ବାରଣ୍ଡା, ପାଇଖାନା, ଗାଧୁଆଘର ବିଶିଷ୍ଟ କମ୍ପାକ୍ଟ ଘର। ଗୋଟିଏ ଫ୍ୟାନ୍ ଓ ଗୋଟିଏ କାଠ ଆଲମାରୀ ଥିଲା। ମୁଁ ଏ ଘରେ ୬୩ ମସିହା ଜୁଲାଇ ମାସରେ ରହିଲି। ମୋ ଜୀବନର ନୂତନ ଅଧ୍ୟାୟ ଆରମ୍ଭ ହେଲା। ମୋର ପୂର୍ବ ରହଣି ସହ ତୁଳନାକଲେ ଆକାଶ ପାତାଳ ପ୍ରଭେଦ ଦେଖାଯିବ। ଜେନା ସାହେବଙ୍କ ଦୟାରୁ ମତେ ଏ ଘରଟି ମୋର ବିନା ଆୟାସରେ ମିଳିଗଲା। ମୋର ଶାନ୍ତ, ସରଳ ସ୍ୱଭାବ, କର୍ମନିଷ୍ଠା ଓ କର୍ମଦକ୍ଷତା ଜେନା ସାହେବ ମତେ ଭଲ ପାଇବାର ଏକମାତ୍ର କାରଣ ନଥିଲା। ଦ୍ୱିତୀୟ କାରଣ ହେଉଛି ମୋର ସ୍ତ୍ରୀର ବେମାରୀ ଅବସ୍ଥା। ସ୍ତ୍ରୀର ବେମାରୀ ସେ ସହ୍ୟ କରି ପାରନ୍ତି ନାହିଁ। ଆମେ ଦେଖିଛୁ ସେ କୌଣସି କର୍ମଚାରୀକୁ ଛୁଟି ଦେବାକୁ ଭଲ ପାଆନ୍ତି ନାହିଁ। ମାତ୍ର ସ୍ତ୍ରୀ ଦେହ ଭଲ ନାହିଁ କହିଲେ ସେ ତତ୍‌କ୍ଷଣାତ୍ ଛୁଟି ମଞ୍ଜୁର କରନ୍ତି। କିନ୍ତୁ ସେ ଏତେ ଅନୁସନ୍ଧାନୀ ଯେ ତାଙ୍କ ଦୁର୍ବଳତାର କେହି ଅସଦ୍ ଉପଯୋଗ କରନ୍ତି ନାହିଁ।

ସରକାରୀ କ୍ୱାର୍ଟରରେ ରହିଲା ପରେ ମୋର ଦ୍ୱିତୀୟ ପୁଅର ନାମ ତୁଳସୀପୁର ଉ.ପ୍ରା. ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ଲେଖାଇଲି। ତାହାର ପଢ଼ାପଢ଼ି ବିଧିବଦ୍ଧ ଭାବରେ ଏହିଠାରୁ ଆରମ୍ଭ ହେଲା। କୁଳାଚାର ଅନୁସାରେ

ବୋହୂମାମାନେ ଶ୍ୱଶୁର ନାମ ତୁଣ୍ଡରେ କହନ୍ତି ନାହିଁ। ନାମଟିକୁ ବଙ୍କେଇ କରି କହନ୍ତି। ବୋଉ, ବଡ଼ମା ହରି କାନଗୋଇ ନକହି ନରି କାନଗୋଇ ବୋଲି ଜେଜେଙ୍କୁ କହନ୍ତି। ଏପରିକି ହରଡ଼ ନ କହି ନରଡ଼ କହନ୍ତି, ମୋର ଦ୍ୱିତୀୟ ପୁଅର ନାମ ନରେଶ ଦିଆଗଲା। ନାମଟି ସାଧାରଣ ଭାବରେ ନରି ହେଲା। ମୁଁ ଭାବିଲି ଏଇ ପୁଅତ ନରି କାନଗୋଇ ହୋଇ ବଂଶର ନାମ ରଖିବ। ତେଣୁ ତାର ନାମ ନରେଶ ଚନ୍ଦ୍ର କାନୁନ୍‌ଗୋ ସ୍କୁଲରେ ଲେଖାଇଲି। ସେହି ନାମ ଗଡ଼ି ଚାଲିଲା। ଅନେକ କହନ୍ତି–ସେ ପୁଅ ହୋଇ ଆସିଛି ବା ପୁଅ ହୋଇ ଯାଇଛି। ଏଇ ପୁଅ ବହୁତ ଯୋଗ୍ୟ, ବଡ଼ ଚାକିରି କରିଛି। ମାତ୍ର ବଂଶର ନାମ ରଖିବା ଲକ୍ଷଣ କାହିଁ ? ଗାଁ ବା ବଂଶପ୍ରତି ତାହାର ଆକର୍ଷଣ ଥିବାର ମୁଁ ଅନୁଭବ କରିନାହିଁ।

ବଡ଼ ଝିଅ ରାଜାବଗିଚା ନି.ପ୍ରା. ସ୍କୁଲରେ ୨ୟ, ୩ୟ ଶ୍ରେଣୀ ପଢ଼ିଥିଲା। ଏଠାରେ ତୁଳସୀପୁର ଉ.ପ୍ରା ସ୍କୁଲରେ ୪ର୍ଥରେ ତାହାର ନାମ ଲେଖା ହେଲା। ବଡ଼ପୁଅ ରାଜାବଗିଚା ସ୍କୁଲରୁ ୭ମ ଶ୍ରେଣୀ ପାସ୍ କରି ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ୮ମ ଶ୍ରେଣୀରେ ନାମ ଲେଖାଇ ପଢୁଥିଲା। ମୋ ସାଙ୍ଗରେ ସାଇକେଲ୍‌ରେ ଆସେ ଓ ଯାଏ। ମୋର ଯିବା ଡେରିଥିଲେ ମୋ ପାଖରେ ଅଫିସ୍‌ରେ ବସେ। କ୍ୱାଟରକୁ ଆସିଲାବେଳକୁ ତାହାର ଦଶମ ଶ୍ରେଣୀ ହୋଇଥିଲା। ସେ ନିଜେ ଯିବା ଆସିବା କରି (ଚାଲିକରି) ପଢ଼ିଲା। ଆମ କଲୋନିରୁ ତା ସାଙ୍ଗରେ ଜ୍ୟୋତିଷ ବୋଲି ଗୋଟିଏ ପିଲା ଯାଉଥିଲା। ସେ ଏବେ ଦିଲ୍ଲୀରେ ଡାକ୍ତର ପ୍ରଫେସର। ଏହିଘରେ ମୋର ୫ମ, ୬ଷ, ୭ମ ସନ୍ତାନ ଜନ୍ମ ହୋଇଥିଲେ। ୬୪ ମସିହା ଡିସେମ୍ବର ୪ ତାରିଖରେ ପଞ୍ଚମ ସନ୍ତାନ, (ପୁଅ) ୬୮ ମସିହା ଏପ୍ରିଲ ୧୪ ତାରିଖରେ ୬ଷ ସନ୍ତାନ (ପୁଅ) ଓ ୭୧ ମସିହା ଜୁଲାଇ ୭ ତାରିଖରେ ୭ମ ସନ୍ତାନ (ଝିଅ) ଜନ୍ମ ହୋଇଥିଲେ। ସବା ସାନ ଝିଅର ଜନ୍ମ ସମୟରେ ଗତ ୩୦ ବର୍ଷ ଧରି ଯନ୍ତ୍ରଣା ଭୋଗୁଥିବା ଗୋଟିଏ ରୋଗରୁ ମୁଁ ମୁକ୍ତିଲାଭ କରିଥିଲି। ରୋଗଟି ଥିଲା ପେପ୍‌ଟିକ୍ ଅଲ୍‌ସର ଏବଂ ତାହା କଟକ ମେଡିକାଲ ହସ୍‌ପିଟାଲରେ ଅପରେସନ୍ ହୋଇଥିଲା। ଏହି ଅପରେସନ୍ ବେଳେ ମୋର ଏକମାତ୍ର ସହାୟ ଥିଲା ମୋର ବଡ଼ପୁଅ। ସ୍ତ୍ରୀ ସେତେବେଳେ ପ୍ରସୂତି। ମୋ ଜୀବନରେ ସହାୟର ସ୍ତର କିପରି ଥିଲା ତାହା ଏଥିରୁ ଅନୁମେୟ।

ଏହି ସମୟରେ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟ ଭଲ ଥିଲା। ସେ ମଝିରେ ମଝିରେ ଆଉଟ୍ ଡୋର୍‌ରେ ଦେହ ପରୀକ୍ଷା କରି ଔଷଧ ଇଞ୍ଜେକ୍‌ସନ୍ ନେଉଥିଲେ। ଆବଶ୍ୟକ ହେଲେ ୱାର୍ଡରେ ମାସେ, ପନ୍ଦର ଦିନ, ଆଠଦିନ ଆଡ୍‌ମିଟ୍ ହୋଇ ରହୁଥିଲେ। ସେ ଭଲ ଥିଲେ, କାମଦାମ କରୁଥିଲେ, ଛୁଆଙ୍କର ଯତ୍ନ ନେଉଥିଲେ। ମୁଁ ମଧ ପାଖେ ପାଖେ ରହି ତାଙ୍କୁ କାମରେ ସାହାଯ୍ୟ କରୁଥିଲି। କ୍ରମେ ତାଙ୍କର ଟିକେ ଟିକେ ମାନସିକ ବିକୃତି ଦେଖାଗଲା। ଚିଡ଼ନ୍ତି, ରାଗନ୍ତି ଅଶାନ୍ତି ହୁଅନ୍ତି, ଦେହ କ'ଣ ହେଉଛି ବୋଲି ଅଭିଯୋଗ କରନ୍ତି। ବେଳେ ବେଳେ ଅଚେତା ହୋଇ ପଡ଼ିଯାନ୍ତି। ଆମେ ଏଗୁଡାକ ପେଖେନା କହି ବିରକ୍ତ ହେଉ। ଛୁଆମାନେ ବି ବିରକ୍ତ ହୋଇ ମନ୍ତବ୍ୟ କରନ୍ତି। ଡାକ୍ତରଙ୍କୁ ବାରମ୍ବାର ଦେଖାଉ। ସେ କିଛି ରୋଗ ନାହିଁ ବୋଲି କହି ତାଙ୍କୁ ବୁଝାନ୍ତି। ଏହି ପ୍ରକାର ଅବସ୍ଥାରେ ଆମେ ପ୍ରାୟ ସାତ ଆଠ ବର୍ଷ କଟାଇଲୁ। ଶେଷରେ ଡାକ୍ତର କହିଲେ ତାଙ୍କୁ ମାନସିକ ରୋଗ ବିଭାଗରେ ଦେଖାଇବାକୁ। ବିମ୍ବାଧର ଦାସ ପ୍ରଫେସରଙ୍କୁ ଦେଖାଇଲୁ। ସେ ଔଷଧ ଦେଲେ। ତାଙ୍କ ଔଷଧ ଖାଇଲା ପରେ ସେ ଶାନ୍ତ ଓ ପ୍ରକୃତିସ୍ଥ ହେଲେ। ପ୍ରାୟ ସବା ସାନଝିଅର ଜନ୍ମ ପରେ ୭୨ ମସିହାରୁ କେବଳ ମାନସିକ ରୋଗୀ ହିସାବରେ ତା'ର ଚିକିତ୍ସା ଚାଲିଲା। ଆମର ଅବହେଳାରୁ ହେଉ ବା ଡାକ୍ତରଙ୍କ ଔଷଧର ଅକର୍ମଣ୍ୟତା ହେତୁ

ହେଉ ବେଳେ ବେଳେ ସେ ଟି'କେ ଅଶାନ୍ତ ହୋଇ ପଡ଼ନ୍ତି। ଡାକ୍ତରଙ୍କୁ ଦେଖାଇ ନୂତନ ଔଷଧ ଖାଇଲେ ପୁଣି ଭଲ ହୋଇଯା'ନ୍ତି। ଏହି ସମୟରେ ଆମେ ଘରେ କାମଦାମ କରିବା ପାଇଁ ଗୋଟିଏ ଲୋକର ବ୍ୟବସ୍ଥା କରିଥିଲୁ। ତାଙ୍କ ଉପରେ ଘରକାମର ଚାପ ନଥିଲା। କ୍ରମେ ସେ ଘରକାମରୁ ସମ୍ପୂର୍ଣ୍ଣ ଓହରିଗଲେ। ତାଙ୍କ ବ୍ୟକ୍ତିଗତ କାମ-ଗାଧୁଆ, ଖାଇବା ପ୍ରସାଧନ ଇତ୍ୟାଦିରେ ସୀମିତ ରହିଲେ।

୬୨ ମସିହା ଆରମ୍ଭରେ ମୋର ସିନିଅର ଅଡିଟର ପୋଷ୍ଟକୁ ବିଧିବଦ୍ଧ ଭାବରେ ପ୍ରମୋଶନ ହୋଇଗଲା। ପୂର୍ବରୁ ନିରବଚ୍ଛିନ୍ନ ଭାବରେ ପ୍ରାୟ ୧୦ମାସ ସେ ପୋଷ୍ଟରେ ଅଫିସ୍‌ସିଏଟିଙ୍ଗ କରିଥିଲି। ସିନିଅର ଅଡିଟର ଥିଲାବେଳେ ୭୦ ମସିହାରୁ ୭୪ ମସିହା ଭିତରେ ପ୍ରାୟ ୪ ବର୍ଷ ବିଭିନ୍ନ ଜାଗାକୁ ଯାଇ ଅଡିଟ୍ କାମ କରିଥିଲି। ୭୪ ମସିହା ଜୁଲାଇ ମାସରେ ଅଡିଟ୍ ସୁପରିଣ୍ଟେଡେଣ୍ଟ ପୋଷ୍ଟକୁ ପ୍ରମୋଶନ୍ ହେଲା। ତାହାପରେ ଅଡିଟରଙ୍କ କାମ ତଦାରଖ କରିବା ପାଇଁ ବିଭିନ୍ନ ଜାଗାକୁ ଟୁର୍‌ରେ ଯିବାକୁ ପଡୁଥିଲା। ଅଡିଟର ହିସାବରେ ଟୁର୍‌ରେ ଯିବାବେଳକୁ ପିଲାମାନେ ବଡ଼ ହୋଇଯାଇଥିଲେ। ବିଶେଷ ଅସୁବିଧା ହୋଇନଥିଲା। ଜେନା ସାହେବ ୬୬ ମସିହାରେ ଅବସର ନେଲେ। ସହକର୍ମୀଙ୍କ ବିରୋଧ ସତ୍ତ୍ୱେ ମୁଁ ୩/୪ ବର୍ଷ ତିଷ୍ଠି ପାରିଲି। ପରେ ଆଉ ସମ୍ଭାଳି ହେଲାନାହିଁ। ମୋତେ ଅଫିସ୍ ଆସ୍ଥାନ ଛାଡ଼ି ବାହାରକୁ ଯିବାକୁ ହେଲା। ସେତେବେଳକୁ ମୋର ଅବସ୍ଥା ବଦଳି ଯାଇଥିଲା। ଭଗବାନଙ୍କର ଅଶେଷ ଦୟା। ବାହାଘର ବେଳେ ଗୋଟିଏ ସାଇକେଲ୍ ଶ୍ୱଶୁର ଘରୁ ପାଇଥିଲି। ମୁଁ ତାକୁ ବ୍ୟବହାର କରୁଥିଲି। ବାହାରକୁ ୪ବର୍ଷ ଗଲାରୁ ସାଇକେଲ୍‌ଟି ଅବ୍ୟବହୃତ ହୋଇ ପଡ଼ିଲା। ଭାଇ ତାକୁ ନେଇଗଲେ। ପରେ ମୋର ଦରକାର ହେଲା, କିନ୍ତୁ ସେ ଦେଲେନାହିଁ। ମୁଁ ଆଉ ଗୋଟିଏ କିଣିଲି। ପୂର୍ବରୁ ବଡ଼ ପୁଅ ପାଇଁ ଗୋଟିଏ ସାଇକେଲ କିଣିଥିଲି। କ୍ରମେ ତାହାର ଆଉ ଦରକାର ହେଲାନାହିଁ। ସେଇଟି ଅବ୍ୟବହୃତ ରହିବାରୁ ତାକୁ ବିକିଦେଲି। ପରେ ତୃତୀୟ ପୁତ୍ରର ବ୍ୟବହାର ପାଇଁ ଗୋଟିଏ ସାଇକେଲ କିଣିଥିଲି। ବଡ଼ ପୁଅର ୩ ପୁଅଝିଅଙ୍କ ପାଇଁ ମଧ୍ୟ ତିନୋଟି ସାଇକେଲ କିଣିଛି। ଏହିପରି ସାଇକେଲ୍ କିଣିବା ମୋର ଗୋଟିଏ ହବି। ଆଉ ତ କିଛି କିଣିପାରିବି ନାହିଁ ସାଇକେଲ୍ ପରି ଅନ୍ୟ ଜିନିଷର ଆବଶ୍ୟକତା ମୁଁ ଅନୁଭବ କରିପାରେନାହିଁ।

## ॥ ଅପକର୍ମରେ ସୁକର୍ମର ପ୍ରଲେପ ॥

୭୦ ମସିହାରେ ଏ ୧.୩୫ ଜମି ଜାରକାରେ ବଡ଼ପୁଅ ନାମରେ ଏବଂ ୭୮ ମସିହାରେ ଏ୦.୦୯ (ଭୁବନେଶ୍ୱରରେ ଏ୦.୯୦) ଜମି ଭୁବନେଶ୍ୱର ବରମୁଣ୍ଡା ଅଞ୍ଚଳରେ ମୋ ନାମରେ କିଣାଯାଇଥିଲା। ଭୁବନେଶ୍ୱର ଜମି ବଡ଼ପୁଅ ଶ୍ୱଶୁରଙ୍କ ପ୍ରଚେଷ୍ଟାରେ କିଣାଯାଇଥିଲା। ଉଭୟ ଜମି ତାହାର ପୂର୍ଣ୍ଣ ଅଧିକାରଭୁକ୍ତ ବୋଲି ବଡ଼ପୁଅ ଭାବୁଥିଲା। ସାନଝିଅ ବାହାଘରରେ ଅର୍ଥ ସହାୟତା ପାଇଁ ବଡ଼ପୁଅର ଅନୁମତି ନେଇ ଜାରକା ଜମିରୁ ଏ୦.୮୫ ଜମି ବିକ୍ରୟ କଲି। ପ୍ରକୃତରେ ବିବାହ ପାଇଁ ଅଳ୍ପଅର୍ଥ ରଖି ଅବଶିଷ୍ଟ ଟଙ୍କା ପିଲାମାନଙ୍କ ଭିତରେ ବଣ୍ଟାଗଲା। ବଣ୍ଟାକୁଣ୍ଟା ଆଲୋଚନା ବେଳେ କମ୍ ବେଶି ପାତର, ଅନ୍ତର ହବାର ଅଭିଯୋଗର ସ୍ୱର ଉଠିଲା। ପରେ ସେ ସବୁ ସମାହିତ ହୋଇଗଲା। ଭୁବନେଶ୍ୱର ଜମିକୁ ସାନ ଦୁଇପୁଅଙ୍କୁ ଦାନସୂତ୍ରେ ଦିଆଗଲା। ଜାରକା ଜମିରୁ ଏ୦-୧୨ ଜମି ସାନଝିଅକୁ ଦାନ ସୂତ୍ରେ ଦିଆଗଲା। ଏସବୁ କର୍ମ ବଡ଼ପୁଅର ସାହାଯ୍ୟ ସହଯୋଗରେ ସଂପନ୍ନ ହେଲା। ମୋ ଇଚ୍ଛାକୁ ସମ୍ମାନ ଦେଇ ସେ ଏ କାମରେ ସହଯୋଗ କଲା। ହେଲେ ଆଲୋଚନା ବେଳେ ସିଏ ତାର ମନର ଭାବ ପ୍ରକାଶ କରିଥିଲା ଯାହାର ଅର୍ଥ ତା ଅଧିକାରରୁ ତାକୁ ବଞ୍ଚିତ କରାଯାଉଛି। ସେ ଏତେ ଉଦାର ଓ ନିର୍ଲୋଭ ଯେ ଅଧିକ ପ୍ରତିବାଦ ନ କରି ସେ ସୃଷ୍ଟ ଅଶାନ୍ତିକୁ ସହ୍ୟ କରିଗଲା। ଜମିବାଡ଼ି ବିଷୟରେ ଏ ପ୍ରକାର ନିର୍ଲୋଭ ବ୍ୟକ୍ତିତ୍ୱ ନିଶ୍ଚୟ ବିରଳ।

ମୋର ଏ କର୍ମ ଓ ଘଟଣାବଳୀର ସ୍ମୃତିଚାରଣ ମୋ ମନରେ କ୍ଷୋଭ ଜାତ କରୁଛି। ମୁଁ ଭାବୁଛି ଯାହା କଲି ତାହା ସୁକର୍ମ ନୁହେଁ, ଅପକର୍ମ। ଯେଉଁମାନଙ୍କୁ ସହାୟତା ମିଳିଲା ସେମାନଙ୍କର ସେ ଉପଲବ୍ଧି ନାହିଁ। ସେ କର୍ମର ନିର୍ଯ୍ୟାସ ହେଲା ବଡ଼ପୁଅ ମନରେ ଦୁଃଖ ଦେବା। ସେ ମୋର ପୁଅ ନୁହେଁ, ଗୋଟିଏ ସାନଭାଇ ଭଳି ପିଲାଦିନରୁ ମୋତେ ସାହାଯ୍ୟ କରି ଆସିଛି। ବରାବର ମୋ ପାଖେ ପାଖେ ସହାୟର ଦଣ୍ଡ ସ୍ୱରୂପ ବିଦ୍ୟମାନ। ତାହାର ପ୍ରତିଦାନରେ ମୋର ତ ଆଉ କିଛି ଦେବାର ନାହିଁ- ଦେଲି ଜୀବନଭରି ଏକ ଗ୍ଲାନି। ଭଗବାନ ମତେ ଏ ପାପରୁ ଉଦ୍ଧାର କରିବେ। ଯାହା ସୁକର୍ମ ଭାବି କଲି ତାହା ମୋ ବିଚାରରେ ଏବେ ପୂର୍ଣ୍ଣ ଅପକର୍ମ। ମୋର ସେ ସବୁ କିଛି କରିବାର ଜରୁରୀ ନଥିଲା। ବଡ଼ ପୁଅ ତା ଭାବଧାରାରେ ଦୃଢ଼ତା ପ୍ରକାଶ କରିଥିଲେ, ମୁଁ ମୋର ଚିରାଚରିତ ସାଲିସ୍ ପନ୍ଥା ନିଶ୍ଚୟ ଅବଲମ୍ବନ କରିଥାନ୍ତି। ସବୁ ଓଲଟ ପାଲଟ ହୋଇଯାଇଥା'ନ୍ତା। ମୁଁ ଗ୍ଲାନିରୁ ରକ୍ଷା ପାଇଥା'ନ୍ତି। ଭଗବାନଙ୍କର ଇଚ୍ଛା ଯାହା ତାହା ହିଁ ହେଲା।

## ।। ତାଆସ୍ ଖେଳ ।।

ହାଇସ୍କୁଲରେ ପଢୁଥିଲାବେଳେ ଅନେକ ସମୟରେ ଆମେ କେତେଜଣ ପିଲା ସ୍କୁଲରୁ ପଳାଇ ଆସି ହଷ୍ଟେଲରେ ତାଆସ ଖେଳୁ। ଥରେ ଧରାପଡ଼ି ଯାଇଥିଲୁ। ଶିକ୍ଷକ ଦେଖିଲେ କ୍ଲାସ୍ ଫାଙ୍କା ଫାଙ୍କା ଦେଖାଯାଉଛି। ଭଲପିଲାଙ୍କର ମୁହଁ ଦିଶୁନାହିଁ। ପଚାରିବାରୁ ପିଲାମାନେ କହିଲେ ହଷ୍ଟେଲ ପିଲା ପଳାଇଯାଇଛନ୍ତି। ହଷ୍ଟେଲ ଓ ସ୍କୁଲ ବିଲଡିଂ ବହୁତ ସଂଲଗ୍ନ ବୋଲି କହିଛି। ଆମେ କବାଟ ବନ୍ଦ କରି ରୁମ୍ ଭିତରେ ଖେଳୁଥିଲୁ। ଜଣେ ପିଲା ଆସି ରୁମ୍ କବାଟ ବାଡ଼େଇ କ୍ଲାସକୁ ଶୀଘ୍ର ଯିବା ପାଇଁ ସାର୍‌ଙ୍କ ନିର୍ଦ୍ଦେଶ ଜଣାଇଲା। ଆମେ ଗଲୁନାହିଁ। ସେ ପିଲା ସାର୍‌ଙ୍କୁ ଜଣାଇଲା ସେମାନେ ଲିଟରେଚର୍ ଖେଳୁଛନ୍ତି, ଆସିଲେନାହିଁ। ଲିଟରେଚର୍ ଗୋଟିଏ ତାସ୍‌ଖେଳ। ଏକଥା ସାର୍‌ଙ୍କୁ ଜଣାନାହିଁ। ସେ ଭାବିଲେ ଭଲପିଲାମାନେ କେବେ ଖରାପ କାମ କରିବେ ନାହିଁ। ଲିଟରେଚର୍ ସମ୍ପର୍କୀୟ କିଛି ଗୋଟାଏ ଭଲକାମ କରୁଛନ୍ତି। ହେଲେ ତାଙ୍କ ନିର୍ଦ୍ଦେଶ ଅମାନ୍ୟ କଲେ। ସେ ହେଡମାଷ୍ଟରଙ୍କ ପାଖରେ ଅଭିଯୋଗ କଲେ। ହେଡ୍‌ମାଷ୍ଟର କୌଣସି ଅନୁସନ୍ଧାନ ନ କରି ଆମକୁ ଅଣାଏ ଲେଖାଏ ଜୋରିମାନା କରିଥିଲେ। ସେ ସମୟରେ ଶିକ୍ଷକମାନଙ୍କର ସ୍ୱଭାବ, ବିଚାର କି ପ୍ରକାର ଥିଲା ଏ ଘଟଣା ତାହାର ଯଥେଷ୍ଟ ସୂଚନା ବହନ କରେ। ଆଜିକାଲି ପିଲାଙ୍କୁ ଡକାଇ ପଠାଇବା ଏବଂ ପିଲା ଆସିଲେ ପଢ଼ା ଆରମ୍ଭ କରିବା ଏକଥା ସ୍ୱପ୍ନରେ ମଧ୍ୟ ଅକଳ୍ପନୀୟ। ପୁଣି ଭଲ ପଢୁଥିବା ପିଲାଙ୍କ ପ୍ରତି ସେ ସମୟରେ ଶିକ୍ଷକଙ୍କର ଏତେ ସ୍ନେହ ସହାନୁଭୂତି ରହେ- ଆଜିକାଲି ତାହା ବିରଳ। ଆମ ହେଡମାଷ୍ଟର ସେ ଗୁଣର ଗୋଟିଏ ପ୍ରତୀକ ଥିଲେ। ଭଲ ପିଲା ବିଷୟରେ କୌଣସି ଅଭିଯୋଗ ଆସିଲେ-ସେ ତାକୁ ଗାଳି ବି ଦିଅନ୍ତି ନାହିଁ। କେବଳ ଆଉ ଏପରି କରିବୁନି କହି ବିଦା କରି ଦିଅନ୍ତି। ଏହିପରି କେତେ କେତେ ଘଟଣା ମୁଁ ଜାଣିଛି।

ଏହି ତାଆସ ଖେଳ ମୁଁ ବରଜପୁର ପ୍ରାଇମେରୀ ସ୍କୁଲରେ ପଢ଼ିଲାବେଳୁ ଶିଖିଛି। ସେତେବେଳେ ହଡ଼ାବେପାରୀ, ମାଗଣ, ନାଚିସ୍, ଟ୍ୱେଣ୍ଟିନାଇନ୍ ପରି ଖେଳ ଆମେ ଜାଣିଥିଲୁ। ତାହା ଭିତରେ ଟ୍ୱେଣ୍ଟି ନାଇନ୍ ଥିଲା ପ୍ରଧାନ। ସମୟ ମିଳିଲେ ଏପରିକି ସମୟ ବାହାର କରି ରାତି ଅନିଦ୍ରା ହୋଇ ମୁଁ ତାଆସ ଖେଳୁଥିଲି। ତାସ୍‌ଖେଳ ପାଇଁ ଚାରିଜଣ ଖେଳାଳୀ ଦରକାର। ଝିଅପିଲା, ପୁଅପିଲା-ଏପରିକି ଆମଠାରୁ ବୟସରେ ବହୁତ ବଡ଼ ଏବଂ ମୋର ମାନ୍ୟ ଲୋକ-ଯେତେବେଳେ ଯିଏ ଜୁଟିଲା-ଚାରିଜଣ ହେଲେ ଖେଳ ଚାଲିଲା। ବାହାରେ କୌଣସି ପ୍ରକାର କାମ ପ୍ରତି ମୋର ଆଗ୍ରହ ନଥିଲା। ମୁଁ ବି କେବେ କିଛି କରିନାହିଁ। ଏହି ତାସ୍ ଖେଳ ମୋର ସ୍ୱଭାବକୁ କବଳିତ କରିଥିଲା। ବରଜପୁର ମାଇନର୍ ପଢ଼ା ଶେଷ ପର୍ଯ୍ୟନ୍ତ ଖେଳ ଚାଲିଥିଲା। ହାଇସ୍କୁଲ ହଷ୍ଟେଲରେ ମଧ୍ୟ ଖେଳିବା କଥା କହିଲି। ସେତେବେଳକୁ ବ୍ରେ ଲିଟରେଚର୍ ପ୍ରଭୃତି ନୂଆ ଖେଳ ଶିଖିଯାଇଥିଲି। ଚାକିରି

ଜୀବନରେ ମଧ୍ୟ ବାଙ୍କିରେ ଖେଳୁଥିଲି। ସେଠାରେ ବ୍ରିଜ୍‌ଖେଳ ଶିଖିଲି। କଟକରେ ସରକାରୀ କ୍ୱାର୍ଟରରେ ଥିଲାବେଳେ ମଧ୍ୟ ବହୁତ ତାସ୍ ଖେଳୁଥିଲି। ଏହି ତାସ୍ ଖେଳର ଆସକ୍ତି ପାଇଁ ସ୍ତ୍ରୀ ବଡ଼ ଚିଡ଼୍ ଚିଡ଼୍ ହୁଅନ୍ତି। ଚାକିରିରୁ ଅବସର ପରେ ଏ ଖେଳ ପ୍ରାୟ ମୁଁ ଛାଡ଼ିଦେଲି କେବଳ ସୁଯୋଗ ଓ ଖେଳାଳୀ ଅଭାବରୁ।

ମୋ ମତରେ ତାସ୍ ଖେଳ ଗୋଟିଏ ଇନୋସେଣ୍ଟ୍ ପାଷ୍ଟିମ୍-ସମୟ କଟାଇବାର ଗୋଟିଏ ନିର୍ଦ୍ଦୋଷ ପନ୍ଥା। ଏ ଅଭ୍ୟାସ ମୋର କିଛି କ୍ଷତି କରିନାହିଁ। ହେଲେ ଏତେ ଖେଳିଲେ ମଧ୍ୟ ମୁଁ ଖେଳରେ ନିପୁଣତା ଅର୍ଜନ କରି ପାରିନାହିଁ। ଅଧିକାଂଶ ସମୟରେ ଖେଳରେ ହାରେ। ଆଜିକାଲି ଅନ୍ୟାନ୍ୟ ଖେଳର ମ୍ୟାଚ ପରି ତାସ ଖେଳ ମ୍ୟାଚ ମଧ୍ୟ ଚାଲିଛି। ମାତ୍ର ସେଥିରେ ପ୍ରତିଯୋଗୀ ହେବାର ଯୋଗ୍ୟତା ମୋର ନାହିଁ। ମୁଁ ଏବେ ଭାବେ ତାସ୍ ଖେଳରେ ନ ମାତିଥିଲେ ହୁଏତ ମୁଁ ଅନ୍ୟ କୌଣସି କର୍ମ ପ୍ରତି ଆକୃଷ୍ଟ ହୋଇଥାନ୍ତି। ଯେପରି ବଗିଚା କାମ, ଗାଈ ସେବା; ମାତ୍ର ଏସବୁ କର୍ମ ପ୍ରତି ମୋର ଆକର୍ଷଣ ଆଦୌ ନାହିଁ।

## ॥ ଭାଗ୍ୟ ଓ ପୁରୁଷକାର ॥

କଟକ ଚାନ୍ଦିନିଚୌକ ସ୍ଥିତ ମନମୋହନ ପୁସ୍ତକାଳୟର ମାଲିକ ଶ୍ରୀ ମୋହନ ଦାସଙ୍କ ଶୁଭଦୃଷ୍ଟି ମୋ ଉପରେ ପଡ଼ିଥିଲା । ମୋର ସହକର୍ମୀ ବନ୍ଧୁ କୃଷ୍ଣଚନ୍ଦ୍ର ସୂତାରଙ୍କ ଜରିଆରେ ଏ ଶୁଭଦୃଷ୍ଟିର ପାତ୍ର ମୁଁ ହୋଇଥିଲି । ସେ ମହାଶୟ ମତେ ଗୋଟିଏ କାମ କରିବା ପାଇଁ ବରାଦ କଲେ । କାମଟି ଥିଲା, ଗୋଟିଏ ଇଂଲିଶରୁ ଓଡ଼ିଆ ଅଭିଧାନ ସଂକଳନ କରିବା । ଏଥିପାଇଁ ମତେ ପାରିଶ୍ରମିକ ପାଞ୍ଚଶହ ଟଙ୍କା ଦେବେ ଏବଂ କାମଟି ମୋତେ ଛଅମାସ ଭିତରେ ସମ୍ପୂର୍ଣ୍ଣ କରିବାକୁ ପଡ଼ିବ । କୃଷ୍ଣବାବୁଙ୍କ ଦ୍ୱାରା ଉତ୍ସାହିତ ହୋଇ ମୁଁ ଏକାମ କରିବା ପାଇଁ ସମ୍ମତ ହେଲି । ମୋହନ ଦାସ ମତେ କହିଲେ "ମୁଁ ରେଭେନ୍ସା କଲେଜର ତଦାନୀନ୍ତନ ଇଂଲିଶ ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ ପତିଙ୍କୁ ଏ ବିଷୟ କହିଛି । ତୁମେ ତାଙ୍କୁ ଦେଖାକର । ସେ ତୁମକୁ ଏ ବିଷୟରେ କିଛି କହିବେ । ମୁଁ ତାଙ୍କୁ ଦେଖା କଲି । ସେ ମୋତେ କହିଲେ ତୁମେ କୌଣସି ଓଡ଼ିଆ, ବଙ୍ଗଳା ଅଭିଧାନର ସାହାଯ୍ୟ ନ ନେଇ କେବଳ ଅକ୍ସଫୋର୍ଡ ଡିକ୍ସନାରି ଦେଖି ଏ କାମଟି କରିବ । ତୁମ ଶକ୍ତି ମୁତାବକ ଓଡ଼ିଆ ଶବ୍ଦ ବାହାର କରି ଲେଖିବ । କିହାଡି ଯେଉଁ ଶବ୍ଦଟି ନ ପାରିବ ତାହା ଛାଡ଼ିଦେବ । ପରିଷ୍କାର ଭାବରେ ଅକ୍ଷର ଲେଖିବ । ଏହି ପ୍ରକାରେ ତୁମେ ୧୦/୧୨ ପୃଷ୍ଠା ଲେଖିକରି ଆଣ । ତାଙ୍କ ସୂଚନା ଅନୁଯାୟୀ ମୁଁ ୧୨ ପୃଷ୍ଠା A ଅକ୍ଷରରେ ଲେଖି ତାଙ୍କୁ ଦେଖାଇଲି । ସେ ଅନୁମୋଦନ କଲେ ଏବଂ ମୋତେ ଆଗେଇ ଯିବାକୁ କହିଲେ । ଏହା ୫୯/୬୦ ମସିହାର ଘଟଣା । ବାହାର କାମ କରିବାକୁ ମୋ ହାତରେ ସମୟ ବହୁତ ସୀମିତ । ତଥାପି ମୁଁ କଷ୍ଟ କରି ନିର୍ଦ୍ଧାରିତ ସମୟସୀମା ଭିତରେ କାମଟି ସମ୍ପୂର୍ଣ୍ଣ କରି ମୋହନ ଦାସଙ୍କୁ ଦେଲି । ମୋର ପ୍ରାପ୍ୟ ପାରିଶ୍ରମିକ ସେ ମତେ ଦେଇଦେଲେ । ହେଲେ ବହିର ମୁଦ୍ରଣ ସେ ତତ୍‌କ୍ଷଣାତ୍ ଆରମ୍ଭ କଲେନାହିଁ । ନୂଆ ଟାଇପ୍ (ଅକ୍ଷର) ବ୍ୟବସ୍ଥା କରୁଥିଲେ । ତାହା ସରିଲେ ବହିର ଛପାକାମ ଆରମ୍ଭ କରିବେ ବୋଲି ମୋତେ କହିଥିଲେ । ମାତ୍ର ଭାଗ୍ୟର ବିଡ଼ମ୍ବନା–ତାଙ୍କର ହଠାତ୍ ଦେହାନ୍ତ ହୋଇଗଲା । ପରେ ପରେ ତାଙ୍କ ସଂସ୍ଥାରେ ନାନା ବିଶୃଙ୍ଖଳା ସୃଷ୍ଟିହେଲା । କାମଟି ଲୋକ ଲୋଚନକୁ ଆସିପାରିଲା ନାହିଁ । ବଣମଲ୍ଲି ବଣରେ ମଉଳିଗଲା ।

ଭାଗ୍ୟର ବିଧାନ ଏହିପରି । ଯାହାର ଯାହା ପ୍ରାପ୍ୟ ତାହା ସେ ତାକୁ ଦିଏ । ମୋର ପ୍ରାପ୍ୟ କିଛି ଅର୍ଥ । ତାହା ମତେ ସୁରୁଖୁରୁରେ ପ୍ରାପ୍ତ ହେଲା । ମାତ୍ର ବହିଟିଏ ପ୍ରକାଶିତ ହେଲେ ଲେଖକଙ୍କୁ ଯେଉଁ ସୁନାମ ବା ଯଶ ସାଧାରଣତଃ ମିଳିଥାଏ ମୋର ତାହା ପ୍ରାପ୍ୟ ନଥିଲା । ହୁଏତ ମୁଁ ସେଥିପାଇଁ ଯୋଗ୍ୟ ନଥିଲି । ପୁରୁଷକାର ବଳରେ ତାହା ହାସଲ କରିବାକୁ ପ୍ରୟାସୀ ହୋଇଥିଲି । ମୋହନଦାସ ବଞ୍ଚିଥିଲେ ତାହା ମତେ ଅଲବତ୍ ମିଳିଥାନ୍ତା । ଯେହେତୁ ତାହା ମୋତେ ମିଳିବାର ନାହିଁ ମୋହନ ଦାସଙ୍କର ମୃତ୍ୟୁ ସଂଘଟିତ ହେଲା । ପୁରୁଷକାର ଆଢ ଭାଗ୍ୟଭିତରେ ଭାଗ୍ୟ ହିଁ ବଳଶାଳୀ । ଏହିପରି ଘଟଣାକ୍ରମରେ ଭାଗ୍ୟ ଉପରେ ଅଧିକ ଆସ୍ଥା ରଖିବା ମୋର ସ୍ୱଭାବଗତ ହୋଇଯାଇଛି ।

## ।। ରାଜ୍ୟ ବାହାରେ ଭ୍ରମଣ ।।

ବଡ଼ ପୁଅ ଆମକୁ (ମୁଁ ଓ ମୋ ସ୍ତ୍ରୀ) ଦୁଇ ଦଫାରେ ରାଜ୍ୟ ବାହାରେ ବିଭିନ୍ନ ସ୍ଥାନକୁ ବୁଲାଇ ନେଇଥିଲା । ପ୍ରଥମ ଦଫାରେ ଆମେ ମାଡ୍ରାସ୍ ଓ ପଣ୍ଡିଚେରୀ ଯାଇଥିଲୁ । ପୁଅର ମାଡ୍ରାସ୍‌ରେ ଗୋଟିଏ ସପ୍ତାହ ବ୍ୟାପି ଟ୍ରେନିଂରେ ଯୋଗଦାନ କରିବାର ଥିଲା । ସେ ମାଡ୍ରାସ୍‌ରେ ରହିଲା ଓ ଆମେ ପଣ୍ଡିଚେରୀରେ ଗୋଟିଏ ହୋଟେଲ୍‌ରେ ସାତଦିନ ରହିଲୁ । ଆମ ସାଙ୍ଗରେ ନାତି ଗୁଲୁ ଯାଇଥିଲା । ପଣ୍ଡିଚେରୀ ଗୋଟିଏ ଛୋଟ ସୁସଂହତ ସୁନ୍ଦର ସହର । ଏଠାରେ ଯୋଗୀ ଅରବିନ୍ଦଙ୍କ ଆଶ୍ରମ ଅବସ୍ଥିତ । ପଣ୍ଡିଚେରୀକୁ ଯିବା ଲୋକେ ସାଧାରଣତଃ ଆଶ୍ରମ ଦ୍ୱାରା ବ୍ୟବସ୍ଥିତ ଘରେ ରହନ୍ତି ଓ ଖାଆନ୍ତି । କିନ୍ତୁ ପୁଅ ଆମପାଇଁ ହୋଟେଲରେ କାହିଁକି ବ୍ୟବସ୍ଥା କଲା ମୁଁ ଜାଣିନାହିଁ । ଏ ସହରଟି ସମୁଦ୍ର କୂଳରେ ଅବସ୍ଥିତ । ମାତ୍ର ପୁରୀ ପରି ଏଠାରେ ସମୁଦ୍ର ବେଳାଭୂମି ନାହିଁ । ସମୁଦ୍ର ଧାରରେ ପାଚେରୀ ଦିଆଯାଇଛି । ଆମେ ତିନିଜଣ (ଜେଜେ, ମା, ନାତି) ପ୍ରତିଦିନ ଚାରିଟା ବେଳେ ସମୁଦ୍ରଆଡେ ବୁଲିଯାଉ । ଆଶ୍ରମର ମୁଖ୍ୟ ସ୍ଥାନକୁ ମଧ୍ୟ ଯାଉ । ସେଠାରେ ପୂଜାବିଧି ଆଦି ପରିଦର୍ଶନ କରୁ । କିନ୍ତୁ ଆଶ୍ରମରେ ଭୋଜନର ସୁବିଧା ଆମେ ଉପଭୋଗ କରିପାରିଲୁ ନାହିଁ । ଅନ୍ୟ ସ୍ଥାନରେ ରହୁଥିବା ଲୋକଙ୍କ ପ୍ରତି ନାନାପ୍ରକାର କଟକଣା । ଆମେ ସେ ସବୁ କଟକଣା ଭିତର ଦେଇ ଆମ ପାଇଁ ଭୋଜନ ବ୍ୟବସ୍ଥା ଇଚ୍ଛାକରି ମଧ କରି ପାରିଲୁ ନାହିଁ । ହୋଟେଲର ଖାଦ୍ୟ ଆମ ରୁଚି ଅନୁରୂପ ନୁହେଁ । ନିରାମିଷ ଖାଦ୍ୟ-ବାହାରୁ ଆମିଷ ମଗାଇ ସେଠାରେ ଖାଇ ପାରିବ ନାହିଁ । ଆମେ ଦୁଇଜଣ ଆଡଜଷ୍ଟ କରି ଚଳୁଥିଲୁ । ନାତିଟି ବଡ଼ ହଇରାଣ ହେଉଥିଲା । ଥରେ ତାକୁ ଖୁସୀ କରିବା ପାଇଁ ଖୋଜି ଖୋଜି ଆମିଷ ହୋଟେଲରେ ମାଂସ ତରକାରୀ ଖାଇଥିଲୁ । ଏଠାରେ ଲୋକଙ୍କର ଭାଷା ତାମିଲ । ସେମାନେ ହିନ୍ଦି ବି ବୁଝନ୍ତିନାହିଁ । ଇଂଲିଶ୍ କିଛି କିଛି ବୁଝନ୍ତି । ଦିନେ ଆମର କିଛି ଚୁଡ଼ା ଦରକାର ହେଲା । ହୋଟେଲ ବଏକୁ ଆମେ ଇଂଲିଶରେ କହି ମଧ ଚୁଡ଼ା ଜିନିଷଟିର ଆକାର ପ୍ରକାର ବୁଝାଇ ପାରିଲୁ ନାହିଁ । ସେ ଆମକୁ ଅନ୍ୟ ବରାଦି ଜିନିଷ ବଜାରରୁ କିଣି ଆଣି ଦେଲା । ମାତ୍ର ଚୁଡ଼ା ଆଣିପାରିଲା ନାହିଁ । ଆମେ ଭାବିଲୁ ଏଠି ବୋଧେ ଚୁଡ଼ାର ପ୍ରଚଳନ ନାହିଁ । ମାତ୍ର ସେହିଦିନ ଚାରିଟା ବେଳେ ବଜାରରେ ବୁଲିଲାବେଳେ ଅଧିକାଂଶ ଦୋକାନରେ ଆମର ଏଠିକା ପରି ଚୁଡ଼ା ବିକ୍ରି ହେବାର ଦେଖିଲୁ । ମୋଟାମୋଟି ଆମାର ପଣ୍ଡିଚେରୀ ରହଣି ଆନନ୍ଦ ଦାୟକ ହୋଇଥିଲା । ଫେରିଲା ବେଳକୁ ଆମେ ମାଡ୍ରାସ୍‌ରେ ଗୋଟିଏ ରାତି ରହି କଟକ ଫେରିଲୁ । ଉଭୟ ପଟର ଯାତ୍ରା ଟ୍ରେନ୍‌ରେ ସ୍ଲିପର କ୍ଲାସରେ ହୋଇଥିଲା ।

ଦ୍ୱିତୀୟ ଦଫାରେ ପୁଅ ଆମକୁ ଦିଲ୍ଲୀ, ଡେରାଡୁନ୍, ହରଦ୍ୱାର, ଋଷିକେଶ୍, ମଶୋରି ଆଦି ସ୍ଥାନକୁ ବୁଲାଇ ନେଇଥିଲା । ସାଙ୍ଗରେ ସାନନାତି ଲାଲୁ ଯାଇଥିଲା । ଏ ଯାତ୍ରା ଟ୍ରେନ୍‌ରେ A.C Class ରେ ହୋଇଥିଲା, ବଡ଼

ଆରାମ ଦାୟକ। ମୁଁ ପାନଖାଏ। ସାଙ୍ଗରେ ଗୋଟିଏ ଛୋଟ ଡବାରେ ପାନପତ୍ର ଓ ଆନୁଷଙ୍ଗିକ ମସଲା ଇତ୍ୟାଦି ନେଇଥିଲି। ଚା'ଜଳଖିଆ, ମିଲ୍ ଟ୍ରେନ୍ ତରଫରୁ ପରିବେଷଣ ହେଉଥାଏ। ଇଚ୍ଛାମୁତାବକ ପାନଭାଙ୍ଗି ମୁଁ ଖାଉଥିଲି। ଭାରି ଖୁସି ଲାଗୁଥିଲା। ଦିଲ୍ଲୀରେ ଆମେ ଓଡ଼ିଶା ଭବନରେ ରହିଲୁ ଓ ସେଠାରେ ଖାଇଲୁ। ସେଠାରେ ଖାଦ୍ୟପେୟ ପୂରାପୂରି ଓଡ଼ିଆ ଷ୍ଟାଇଲ୍‌ର। ଭାତ, ଡାଲି ଘାଣ୍ଟ ତରକାରୀ, ଶାଗଭଜା, ଖଟା, ମାଛ ତରକାରୀ। ଗୋଟିଏ ଅସୁବିଧା ହେଲା ମୋର ପାନପତ୍ର ସରିଯାଇଥିଲା। ଓଡ଼ିଶା ଭବନ ସାମନାରେ ଅନେକ ପାନଦୋକାନ। କିନ୍ତୁ ସେମାନେ ପାନପତ୍ର ବିକନ୍ତି ନାହିଁ। ଗୋଟିଏ ଓଡ଼ିଆ ପାନ ଦୋକାନୀକୁ ବହୁତ ନେହୁରା ହେଲି। ସେ ନାହିଁ ନାହିଁ ହୋଇ ଅଳ୍ପ କିଛି ଦେଲା। ମୁଁ ଯାଚୁଥିବା ଅଧିକ ପଇସା ନେଲାନାହିଁ, ମୋତେ ଦୋକାନରୁ ମିଳୁଥିବା ଭଙ୍ଗା ପାନ ଭଲ ଲାଗେନାହିଁ।

ତାହାପରେ ଆମେ ଡେରାଡୁନ୍ ଟ୍ରେନ୍‌ରେ ଗଲୁ। ସେଠାରେ ଗୋଟିଏ ହୋଟେଲରେ ରହିଲୁ। ଦିଲ୍ଲୀରୁ ଡେରାଡୁନ୍ ରେଳପଥ ଉଭୟ ପାଖରେ ପାହାଡ଼ ପର୍ବତ ଓ ଜଙ୍ଗଲ, ସମ୍ପୂର୍ଣ୍ଣ ପାର୍ବତ୍ୟ ଅଞ୍ଚଳ। ଏବେ ଡେରାଡୁନ୍‌କୁ ନେଇ ଉତ୍ତରାଞ୍ଚଳ ପ୍ରଦେଶ ଗଠିତ ହୋଇଛି। ସେଠାରୁ ଆମେ ହରଦ୍ୱାର, ଋଷିକେଶ, ମଶୋରୀ ବୁଲି ଯାଇଥିଲୁ। ଋଷିକେଶରେ ଲକ୍ଷ୍ମଣଝୁଲାରେ ଚଢ଼ି ଗଙ୍ଗାନଦୀ ଆରପଟକୁ ଯାଇଥିଲୁ। ସେଠାରେ କେତେଗୁଡ଼ିଏ ମନ୍ଦିର ଅଛି। Divine life society ର ମୁଖ୍ୟ କେନ୍ଦ୍ର ଏଠାରେ ଅବସ୍ଥିତ। ହରଦ୍ୱାରରେ ଗଙ୍ଗା ନଦୀରେ ସ୍ନାନ କଲୁ ଏବଂ କିଛି ଗଙ୍ଗାଜଳ ସାଙ୍ଗରେ ଆଣିଲୁ। ଡେରାଡୁନ୍ ରହଣି ବେଳେ ସ୍ତ୍ରୀଙ୍କର କ'ଣ କାହିଁକି ମନ ବିଗିଡ଼ିଗଲା, ସେ ବଡ଼ ନିରୁତ୍ସାହିତ ହୋଇପଡ଼ିଲେ। ହରଦ୍ୱାରରେ ସ୍ନାନ ବି କରି ନଥିଲେ। ତାଙ୍କ ମନରେ ଆନନ୍ଦ ଉଲ୍ଲାସ ନଥିଲା। ବାଧ ହେଲାପରି ଆମ ସାଙ୍ଗରେ ଯିବା ଆସିବା କରୁଥିଲେ।

ମଶୋରୀରୁ ଫେରିଲାବେଳେ ମୁଁ ପାନ କିଣିବା ପାଇଁ ଗୋଟିଏ ଦୋକାନକୁ ଗଲି। ନାତି ବି ଚକୋଲେଟ୍ ପାଇଁ ମୋ ସାଙ୍ଗରେ ଗଲା। ପୁଅ ଓ ମା ବସ୍‌ରେ ରହିଲେ। ମୋର ପାଞ୍ଚମିନିଟ୍ ଡେରି ହୋଇଗଲା। ମୋର ପାନଖିଆ ଅଭ୍ୟାସକୁ ପୁଅ କଟୁ ଭାଷାରେ ମନ୍ତବ୍ୟ କଲା। ମୁଁ ଏତେ ଉତ୍ତେଜିତ ହୋଇଗଲି ଯେ ତାକୁ ବହୁତ ଗାଳି ଗୁଲଜ କଲି। ପୁଅର ଗୋଟିଏ ଗୁଣ ଭଲ କି ମନ୍ଦ ମୁଁ କହିପାରିବି ନାହିଁ। ପ୍ରତ୍ୟୁତ୍ତର ଦିଏନାହିଁ। ଡେରାଡୁନ୍‌ରୁ ଦିଲ୍ଲୀ ଫେରିଲୁ ଏବଂ ସେଠାରୁ ଟ୍ରେନରେ A.C Sleeperରେ ଟ୍ରେନ୍‌ରେ କଟକ ଫେରିଲୁ।

ପୁଅ ପାଇଁ ଆମକୁ ଏ ସୌଭାଗ୍ୟ ମିଳିଥିଲା। ଏ ଦୁଇଟିଯାକ ଘଟଣା ୯୧/୯୨ ମସିହାର ଘଟଣା। କର୍ତ୍ତବ୍ୟ ଅନୁରୋଧରେ ରାଜ୍ୟ ଭିତରେ ଅନେକ ସ୍ଥାନ ଦେଖିବାର ସୁଯୋଗ ମୋତେ ମିଳିଥିଲା।

## ।। ବାସ ପାଇଁ ଅସଫଳ ଚେଷ୍ଟା ।।

କଟକରେ ଖଣ୍ଡେ ଜମି ପାଇଁ ମତେ ତିନୋଟି ସୁଯୋଗ ମିଳିଥିଲା । ଜଣେ ଭଦ୍ରଲୋକ ତାଙ୍କର ଏକଗୁଣ୍ଠ ପରିମିତ ଖୁବ୍ ଭଲ ଜମି ବିକ୍ରି କରିବାକୁ ଚାହିଁଲେ । ସେ ନିଜେ ମତେ ମୁଁ ନେବି କି ନାହିଁ ପଚାରିଲେ । ଜମିରେ କିଛି ଗୋଳମାଳ ଥିବା ଆଶଙ୍କା କରି ମୁଁ ନାହିଁ କଲି । ପରେ ପରେ ଅନ୍ୟଜଣେ ସେ ଜମି ନେଲେ । ଆଉ ଖଣ୍ଡିଏ ଜମିର ଦାମ୍ ଇତ୍ୟାଦି ବିଷୟରେ ମାଲିକଙ୍କ ସହ କଥାଭାଷା ସରିଥିଲା । ମୁଁ କିଛି ଟଙ୍କା ଆଡ୍‌ଭାନ୍‌ସ ଦେଇ ଚୁକ୍ତିପତ୍ର ଲେଖାଇବା ପାଇଁ ତାଙ୍କ ଘରକୁ ଗଲି । ଏ ଜମି ବିଷୟରେ ଆଉ ଜଣେ ଲୋକ ସହ ତାଙ୍କର କଥାଭାଷା ପୂର୍ବରୁ ହୋଇଥିଲା । ଏଥିନେଇ ମାଲିକ ମାଲିକାଣୀଙ୍କ ଭିତରେ ପାଟିତୁଣ୍ଡ ହେବା ଜାଣି ମୁଁ ପଳାଇ ଆସିଲି । ସେ ଜମି ପ୍ରଥମ ଲୋକ ନେଲା । ଆଉ ଜଣେ ଭଦ୍ର ମହିଳା ତାଙ୍କ ଜମିରୁ ଖଣ୍ଡେ ମତେ ଦେବାପାଇଁ ସ୍ୱତଃପ୍ରବୃତ୍ତ ହୋଇ ଆଗେଇ ଆସିଲେ । ଏ ଜମିଟି ସେ ତାଙ୍କ ଝିଅକୁ ଦେଇଥିଲେ । ଝିଅ ତା' ବିକ୍ରି କରିଦେବାକୁ ଚାହେଁ । ମା ମତେ କହିଲେ ତୁମେ ନିଅ, ତୁମେ ଆମ ଜାତି ଲୋକ ଆମ ପାଖରେ ରହିବା ଆମେ ଚାହୁଁ । ଝିଅ ଯାହା ଦାମ୍ କହୁଛି ମୁଁ କହି କିଛି କମାଇ ଦେବି । ଯାହା ଦାମ୍ କହିଲେ ତାହା ମୋ ଯୋଗାଡ଼ର ବାହାରେ ଥିଲା । ବଡ଼ପୁଅ ପାଖକୁ ଚିଠି ଦେଲି । ତାହାର ଅବଶିଷ୍ଟ ଟଙ୍କା ଯୋଗାଡ଼ କରିବାର ସୁବିଧା ଅଛି କି ନାହିଁ ତାହା ଭିନ୍ନକଥା, କିନ୍ତୁ ସେ ଜାଗା ତା'ପାଇଁ ଉପଯୁକ୍ତ ନୁହେଁ ବୋଲି କହି ସେ ମନାକଲା । ଏ ଜମି ମଧ୍ୟ ମୋ ଆଖି ଆଗରେ ବିକ୍ରି ହୋଇ ଘର ଠିଆ ହେଲା । ଏ ତିନିଟିଯାକ ଜମିର ମାଲିକ ମୁଁ ରହୁଥିବା ଘର ପାଖର ଲୋକ ଓ ଜମି ମଧ୍ୟ ଘର ନିକଟରେ । ପ୍ରାୟ ୭୮,୭୯ ମସିହାର ଘଟଣା । ମୋତେ ଯାହା ପ୍ରାପ୍ୟ ମୁଁ ବିନା ଆୟାସରେ ଲାଭ କରିଛି । ଯାହା ପ୍ରାପ୍ୟ ନୁହେଁ, ଆଖିଦୃଶିଆ ସୁଯୋଗ ଥାଇ ବି ପ୍ରାପ୍ତ ହୋଇନାହିଁ । ମୋ ଜୀବନର ଘଟଣାବଳୀ ମତେ ଭାଗ୍ୟବାଦୀ କରାଇଦେଇଛି ।

## ।। ଦାମ୍ପତ୍ୟ ଜୀବନ ।।

ସ୍ତ୍ରୀଙ୍କର ଭକ୍ତି, ଆନୁଗତ୍ୟ ଲାଭ କରିଛି ବୋଲି ମୋର ହୃଦ୍‌ବୋଧ ହୁଏ। ସେ କେବେ ଅବାଧ ହୋଇ ନାହାନ୍ତି, କି ମୋତେ ଅମାନ୍ୟ, ଅବଜ୍ଞା କରିନାହାନ୍ତି। ବୁଢ଼ୀ ବୟସରେ ବି ନୂଆ ଶାଢ଼ୀ ଖଣ୍ଡେ ପିନ୍ଧିଲେ କି ନୂଆ ଚୁଡ଼ି ମୁଠାଏ ନାଇଲେ ମୁଣ୍ଡ ଲଗାଇ ପାଦ ଛୁଇଁ ଦଣ୍ଡବତଟିଏ କରିବାକୁ ଭୁଲନ୍ତି ନାହିଁ। ହେଲେ ତାଙ୍କର ଭଲପାଇବା ଲାଭ କରିଛି ବୋଲି ମୋର ଅନ୍ତର କହେନାହିଁ। ଭଲପାଇବା, ଆନୁଗତ୍ୟ ଏକା ଜିନିଷ ନୁହେଁ। ଗୋଟିଏ ସ୍ୱତଃସ୍ଫୂର୍ତ୍ତ ହେଲେ ଅନ୍ୟଟି ବିଚାରମୂଳକ। ମୁଁ ଏହା ବରାବର ଅନୁଭବ କରି ଆସିଛି। ଚୁପ୍ ରହିନାହିଁ। ବାରମ୍ବାର ତାଙ୍କୁ ଏ ବିଷୟ କହେ। କିନ୍ତୁ ସେ ସର୍ବଦା ନିରୁତ୍ତର ରହନ୍ତି। ଖୁବ୍ ବାଧ୍ୟ କଲେ ନାସ୍ତିବାଚକ ବାକ୍ୟଟିଏ କହନ୍ତି– ଭଲ କାହିଁକି ନ ପାଇବି। ଏକଥା ପଦକରେ ମଧ୍ୟ ସରସତା ନଥାଏ। 'ଭଲପାଏ' ବୋଲି ଆସ୍ତିବାଚକ ବାକ୍ୟଟିଏ ତାଙ୍କ ତୁଣ୍ଡରୁ କେବେ ବାହାରେ ନାହିଁ। ସେ ବଡ଼ ସତର୍କ। ମୁଁ ଅନୁଭବ କରିଛି, ମୋ ପାଖରେ ବସିବା, ଆଳାପ କରିବା, ହାସ୍ୟରସ କରିବାର ଆଗ୍ରହ ତାଙ୍କର ନଥାଏ। ମୁଁ ବାଧ୍ୟ କରି ପାଖରେ ବସାଏ, ଛଟଛଟ ହୁଏ। ସେ କିନ୍ତୁ ଗୋଟିଏ ନିଷ୍ପ୍ରାଣ ମୂର୍ତ୍ତି ପରି ଅବିଚଳିତ ରହନ୍ତି। କାରଣ ଚିହ୍ନଟ କରିବା ପାଇଁ ମୁଁ ବହୁ ପ୍ରୟାସ କରିଛି। ମୋର ସବୁ ଯୁକ୍ତିହାର ମାନିଯାଇଛି।

ମୋର ଅଯୋଗ୍ୟ ପଣ, ଅପାରଗତା, ନିର୍ଦ୍ଧନତା ମଧ୍ୟ ଏହାର କାରଣ ନୁହେଁ। କାରଣ ଏବିଷୟରେ ସେ କେବେହେଲେ ପଦେ କହିନାହାନ୍ତି। ତାଙ୍କ ମନରେ ଆବିଳତା ଥିଲା ତାହା ସେ ଲୁଚାଇବାକୁ ଯାଇ ମନ ଆକର୍ଷକ ବ୍ୟବହାର ଦେଖାନ୍ତେ। ଧନଶାଳୀ, ଗୁଣୀ, ଉଚ୍ଚସମ୍ମାନର ଅଧିକାରୀ, ଭୋଗ ବିଳାସ ପ୍ରାଚୁର୍ଯ୍ୟ ପ୍ରଦାନକାରୀ ସ୍ୱାମୀକୁ ପରିତ୍ୟାଗ କରିବାର କାହାଣୀ ଆମେ ଶୁଣିଛୁ। ନାରୀ ଚରିତ୍ର ରହସ୍ୟମୟ ବୋଲି ଯାହା କହନ୍ତି, ମୋ ମନରେ ସେ ଭାବ ବଦ୍ଧମୂଳ ହୁଏ। ଭଗବାନ ମଧ୍ୟ ସେ ରହସ୍ୟ ଭେଦି ପାରିବେ ନାହିଁ ବୋଲି କୁହାଯାଏ। ନାରୀମାତ୍ରେ ଅବଶ୍ୟ ଭୋଗ ବିଳାସପ୍ରିୟ। ମାତ୍ର ତାହା ତାହାର ମନକୁ ବାନ୍ଧିରଖିବାର ସର୍ବଶ୍ରେଷ୍ଠ କାରଣ ନୁହେଁ। ସାଧାରଣ ଆଖିରେ ନିର୍ଦ୍ଧନ, ଅଯୋଗ୍ୟ ପୁରୁଷକୁ ମଧ୍ୟ ନାରୀ ଆଦର କରିବାର ଦେଖାଯାଏ। ଆଦରଣୀୟ ବସ୍ତୁଟି ତାହାପାଇଁ କ'ଣ ଜଣାପଡେନାହିଁ। ମୋତେ ଦେହ ଦାନ କରିବାରେ ସେ ବହୁତ ବହୁତ ଉଦାର। ମାତ୍ର ମନଟି ତାଙ୍କର ମୋ ପାଇଁ ସଦାବେଳେ ବନ୍ଦ। ହସଖୁସି ଭରା କଥାପଦେ କେବେ ମୁଁ ତାଙ୍କ ମୁହଁରୁ ଶୁଣିନାହିଁ। ଏହିପରି ଦ୍ୱନ୍ଦ ଭିତରେ ହିଁ ମୋର ଜୀବନ ଗତି କରିଛି। ତାଙ୍କ ଆଚରଣରେ ହତାଶ ହୋଇ ଦିନେ ତାଙ୍କୁ କହିଲି, ତୁମେ ତୁମ ଆଚରଣ ଓ ଭାବରେ ପରିବର୍ତ୍ତନ ନ କଲେ ମୁଁ ତୁମକୁ ଆଉ କଥା କହିବି ନାହିଁ। ସେ ତତ୍‌କ୍ଷଣାତ୍

ଉତ୍ତର କଲେ କଥା ନ କହିଲେ ମୁଁ ଭାସିଯିବି। ଏ କଥା ମୋ ମନକୁ ପ୍ରଚଣ୍ଡ ଆଘାତ ଦେଲା। ମୁଁ ନୀରବ ରହିଲି ଏବଂ ତାଙ୍କ ସହ କଥାଭାଷା ବନ୍ଦ କରିଦେଲି। ମୁଁ ଭାବିଲି ତାଙ୍କ ପାଇଁ ମୋ ସ୍ଥିତିର କୌଣସି ଆବଶ୍ୟକତା ନାହିଁ, ଏ ବାକ୍ୟ ହିଁ ଏହି ଭାବର ଅଭିବ୍ୟକ୍ତି। ଛଅମାସ ବିତିଗଲା। କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଲାନାହିଁ। ମୁଁ କଥା କହୁନାହିଁ ବୋଲି ଦୁଃଖ ମଧ୍ୟ କଲେ ନାହିଁ। ଏ ଅବସ୍ଥା ଭାଙ୍ଗିଯିବା ପାଇଁ ପ୍ରୟାସ ମଧ୍ୟ କଲେନାହିଁ। ତାଙ୍କ ଦୈନନ୍ଦିନ ଜୀବନଚର୍ଯ୍ୟା ଅବ୍ୟାହତ ରହିଲା। ଶେଷରେ ଚୋରକୁ ନାମମାରି ଖପରାରେ ଖାଇବା ନୀତି ପରିହାର କରି ମୁଁ ଆପେ ଆପେ ତାଙ୍କ ସହ ସ୍ୱାଭାବିକ ହୋଇଗଲି। ମୁଁ ଭାବିଲି, ଜୀବନସାରା ମୁଁ ତାଙ୍କ ପାଖରେ ରୁକ୍ଷ ବାସ୍ତବତାର ଚିତ୍ର ବଖାଣି ଆସିଛି। ସେ ବିଦ୍ରୋହ କରିନାହାନ୍ତି। ଉଦାସୀନ ଭାବରେ ଶୁଣି ଆସିଛନ୍ତି। ସେ ଏବେ ମାୟାର ଆବରଣ କାଢ଼ିଦେଇ ପଦେ ବାସ୍ତବ କଥା କହିଦେଲେ ବୋଲି ମୁଁ ବିଦ୍ରୋହ କରିବା ଠିକ୍‌ନୁହେଁ। ଏହାର ଅଳ୍ପଦିନପରେ ତାଙ୍କର ମହାପ୍ରୟାଣ ଘଟିଲା।

ତାଙ୍କ ସ୍ୱଭାବର ଆଉ ଗୋଟିଏ ବୈଶିଷ୍ଟ୍ୟ ଏଠି ଉଲ୍ଲେଖନୀୟ। ସେ ମୃତ୍ୟୁ ପର୍ଯ୍ୟନ୍ତ ରୋଗୀ ହିସାବରେ ବଞ୍ଚିଲେ। ମୁଁ ଉତ୍ସର୍ଗୀକୃତ ଭାବରେ ତାଙ୍କର ସେବା କରି ଆସିଛି। ତାଙ୍କର ସଦା ରୋଗୀ ଅବସ୍ଥା ମୋ ଜୀବନରେ ଯେ ବିପର୍ଯ୍ୟୟ ନ ଘଟାଇଛି, ତାହାନୁହେଁ। ମାତ୍ର ସେଥିପାଇଁ ସେ ମୋ ପ୍ରତି କେବେ କୃତଜ୍ଞତା ପ୍ରକାଶ କରନ୍ତି ନାହିଁ। ବରଂ କଥା ପଡ଼ିଲେ କହନ୍ତି–ଔଷଧ କିଏ ଖାଉନାହିଁ। ମୋର ଲେଖାଲେଖି ଓ ବହିଛପା କାମକୁ ମଧ୍ୟ ସେ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ। ପ୍ରେରଣା ମିଳିବା ତ ଦୂରର କଥା। ବେଳେ ବେଳେ କହନ୍ତି ଏଗୁଡ଼ା କାହିଁକି ଲେଖୁଛ। ମୁଁ ତାଙ୍କୁ ମୋ ବହିର ପ୍ରକାଶିକା ଆସନ ଅର୍ପଣ କରି ସମ୍ମାନିତ କରିଛି। ଏହା ବୁଝାଇଲେ ମଧ୍ୟ ତାଙ୍କ ମନରେ ଭାବାନ୍ତର ସୃଷ୍ଟି ହୁଏନାହିଁ। ଏସବୁ ପାଇଁ ମୁଁ ତାଙ୍କୁ ନିନ୍ଦା କରୁନାହିଁ। କାରଣ ଯାହାର ଯେପରି ମୂଲ୍ୟବୋଧ। ତେବେ ଉଲ୍ଲେଖ କରିବାର କାରଣ ହେଉଛି– ମୁଁ ଦର୍ଶାଇବାକୁ ଚାହେଁ ଯେ ସେ ମୋଠାରେ କୌଣସି ଭଲଗୁଣ ଦେଖିବାକୁ ଚାହାନ୍ତି ନାହିଁ। ତାଙ୍କର ମୋତେ ଭଲ ନ ପାଇବା ଏତେ ପ୍ରଖର ଯେ ସେଠାରେ ମୋର ଭଲଗୁଣ ଅଦୃଶ୍ୟ ବା ଅସ୍ପଷ୍ଟ ହୋଇଯାଏ। ମୋର ଆତ୍ମଚିନ୍ତନ କବିତାରେ (୮୭ ମସିହାରେ ରଚିତ) ତାଙ୍କ ସମ୍ବନ୍ଧରେ ଯାହା ଲେଖିଛି, ତାହା ଏଠାରେ ଉଦ୍ଧାର କରୁଛି।

ଭାରିଜା ମୋହର ଅତି ଉଦାସୀନ
କି ବର୍ଣ୍ଣିବି ତା'ର ଗୁଣ
ଶୟନ ଭୋଜନ ଛଡ଼ା ଆଉ କିଛି
ନ ଦିଶଇ ତାକୁ ପୁଣ।
ଅଭାବୀ ଜୀବନେ ଦେଇନାହିଁ କେବେ
ବସ୍ତ୍ର ଅଳଙ୍କାର ମାନ
ବାସ ହୀନ ପୁଣି ନିସମ୍ବଳି ଶେଷେ
ଅର୍ଜନ ଅକ୍ଷମ ଜନ।
ଭରଣ ପୋଷଣ ପାଇଁ ପୁତ୍ରପରେ

ହେଲା ସେ ନିର୍ଭରଶୀଳା,
ଏପରି ସ୍ୱାମୀକୁ ସ୍ୱାମୀର ଆଦର
ଦିଏ ଭବେ କେଉଁ ବାଳା ?
ପାଇନାହିଁ କେବେ ଭାରିଜାଠୁ ମୁହିଁ
ସରାଗ ଆଦରମାନ,
ଛନ୍ଦଗନ୍ଧହୀନ ଦାମ୍ପତ୍ୟ ଜୀବନ
ଏଣୁ ବିଚାରେ ମୋ ମନ।
ମାତ୍ର ସେଥିପାଇଁ ନ ଦୋଷଇ ତାକୁ
ବିଚାରି ତା ସଦ୍‌ଗୁଣ
ସରଳ ନିଷ୍ପାପ ଦେବ ଦ୍ୱିଜେ ଭକ୍ତି
ଆବିଳତା ହୀନ ମନ।

ଯା ପରେ ଦୀର୍ଘଦିନ ବିତିଯାଇଛି। ଭାବର ପରିବର୍ତ୍ତନ ଘଟିନାହିଁ। ଆମର ସ୍ଥିତିକୁ ଅନୁସରଣ କରି ଆମର ସମ୍ପର୍କ ବହୁତ ସଙ୍କୁଚିତ ହୋଇଯାଇଛି। ଫଳରେ ତାଙ୍କ ବିୟୋଗରେ ମୋର ନିଃସଙ୍ଗତା ବଢ଼ିଯାଇନାହିଁ। କାରଣ ତାଙ୍କ ସହ ମାନସିକ ବା ଦୈହୀକ ସ୍ତରରେ ଦୀର୍ଘଦିନ ଧରି କୌଣସି ସମ୍ବନ୍ଧ ନଥିଲା। ସେ ବଞ୍ଚିଥିଲାବେଳେ ମୁଁ ଯେପରି ଏକାକୀ ସମୟ କାଟୁଥିଲି, ଏବେ ସେହିପରି ଏକାକୀ ମୋର ସମୟ କଟୁଛି। ତଥାପି ସ୍ମୃତିଚାରଣରୁ କ୍ଷାନ୍ତି ମିଳୁନାହିଁ। ତାଙ୍କର ଅନେକ ଭଲଗୁଣ ମନରେ ସନ୍ତୋଷ ଦେଉଛି। ଏପରିକି ମୋର ଲେଖାଲେଖିରେ ତାଙ୍କର ଗୁଣ କୀର୍ତ୍ତନ କରିଛି। କିନ୍ତୁ ଲୋକ ଅନ୍ତର ହୋଇଗଲେ ତାହାର ସନ୍ତୋଷ ଦେଉଥିବା ଗୁଣଟି ଯେତିକି ମନେ ନପଡ଼େ, ତାତୋଽଧିକ ମନେପଡ଼େ ମନକୁ ଆଘାତ ଦେଉଥିବା ତାହାର ବିଭାବଟି। ମୁଁ ସେହିପରି ସେ ମୋତେ ଭଲ ପାଉନଥିଲେ କେବଳ ଏହି କଥାଟି ହିଁ ଭାବୁଛି। ସେ ବଞ୍ଚିଥିଲାବେଳେ ଏଇ ଭାବ ମଧ ମନରେ ଥିଲା। ମାତ୍ର ତାହା ଏତେ ବାଧୁନଥିଲା। ଏବେ ଭାବି ଭାବି ମନ ଅତିମାତ୍ରାରେ ବିଷଣ୍ଣ ହୋଇଯାଉଛି। ବିଷାଦର ଶୀର୍ଷରେ ପହଞ୍ଚି ମୁଁ ନାରୀ ମନର ବିଶ୍ଳେଷଣ କରୁଛି। ଭଲ ପାଇବା ନ ପାଇବାର କାରଣ ଏବେ ମୋତେ ଭିନ୍ନ ଭାବରେ ଦେଖାଯାଉଛି। ତାକୁ ମୁଁ ବରାବର ଦୋଷୀ ଭାବୁଥିଲି। କିନ୍ତୁ ଏବେ ସେ ଭାବ ବଦଳିଯାଇ ନୂତନଭାବ ମୋ ମନରେ ଆଲୋଡ଼ନ ସୃଷ୍ଟି କରୁଛି।

ମୋର ବିଶ୍ଳେଷଣ ଏହି ପ୍ରକାର। ନାରୀ ମାୟାର ପ୍ରତୀକ। ଅସତ୍ ଆଉ ମାୟାରେ ବୁଡ଼ି ରହିବାରେ ତା'ର ଆନନ୍ଦ। ତାହାର ଭଲପାଇବା ଲାଭ କରିବାକୁ ହେଲେ ପୁରୁଷକୁ ମାୟାର କୁହେଳି ସୃଷ୍ଟି କରିବାକୁ ହୁଏ। ସେ ଧନ ଚାହେଁ, ଭୋଗ ଚାହେଁ, କାମ ଚାହେଁ ସେବା ସାହେଁ। ସେ କେତେବେଳେ କ'ଣ ଚାହେଁ, ତାହାର ସ୍ଥିରତା ନାହିଁ। ତାହାର ସମସ୍ତ ଚାହିଦାର ନିର୍ଯ୍ୟାସ ହେଉଛି– ପୁରୁଷର ରସିକତା। ଏଇ ରସିକ ପଣକୁ ମାୟା ଛାଞ୍ଚରେ ଢାଳି ପରିବେଷଣ କରିବାକୁ ହୁଏ। ତା ମନରୁ ଶିଥିଳତା, ଶୀତଳତା ଦୂର କରି ଉଷ୍ମତା, ଉତ୍ତେଜନା ସୃଷ୍ଟି କରିବାକୁ ହୁଏ। ବିନା ଧନ, ବିନା ଭୋଗ, ବିନା କାମ, ବିନା ସେବାରେ ମଧ ଏହା ସମ୍ଭବ। ସାରବସ୍ତୁ ହେଲା ପୁରୁଷର

ରସିକ ପଣ ଓ ମାୟା । କିନ୍ତୁ ହାୟ, ମୋ ଠାରେ ରସିକପଣ ତ ନଥିଲା । ମୁଁ ପୁଣି ଶୁଷ୍କ ନୀତିବାଦୀ ଓ ବାସ୍ତବବାଦୀ । ମିଥ୍ୟା, ଅସତ୍‌ର ମୁଁ ବହୁତ ଦୂରରେ । ମୋର ଆଚରଣରେ ତାଙ୍କ ମନର ଭଲପାଇବା ଗୁଣ ସୁପ୍ତ ହୋଇଯାଏ । ତାହା ପୂର୍ଣ୍ଣତଃ ଅବିତରିତ ରହିଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ସବୁ ମଣିଷ ମନରେ ଭଲ ପାଇବା ଗୁଣ ଥାଏ । କାହାକୁ ନା କାହାକୁ ସେ ଦିଏ । ଦେବାରେ ହିଁ ଆନନ୍ଦ ନିହିତ । ସେ ତାଙ୍କ ମନର ଭଲ ପାଇବା ମୋତେ ତ ଦେଇନାହାନ୍ତି । କାହାକୁ ବି ଦେଇନାହାନ୍ତି । ପୁରୁଷଟିଏ ଭଲ ନ ପାଇ ତାଙ୍କ ନାରୀ ଜୀବନ ବିତିଯାଇଛି । ପକ୍ଷାନ୍ତରେ ମୋ ଜୀବନ ମଧ ସେଇଆ । ନୀତି ହେଉଛି- ପାଇଲେ ଦିଏ ବା ଦେଲେ ପାଏ । ମୁଁ ତ ପାଇନାହିଁ । ତେଣୁ ମୁଁ ଦେଇଛି ବୋଲି କହିବା ଠିକ୍ ନୁହେଁ । ମୋଟ ଉପରେ ଆମ ଭିତରେ ଭଲ ପାଇବାର ଆଦାନ ପ୍ରଦାନ ନଥିଲା, ଯଦିଓ ପାରସ୍ପରିକ ଆନୁଗତ୍ୟ ଓ ସମ୍ବେଦନ ଥିଲା । ଆମର ଦାମ୍ପତ୍ୟ ଜୀବନ ଛନ୍ଦଗନ୍ଧହୀନ ବୋଲି ଯାହା ଲେଖିଛି, ତାହା ଠିକ୍ । ସେଥିପାଇଁ ସେ ଦାୟୀ ନୁହନ୍ତି । ଦୟୀ ମୋର ଆଚରଣ, ମୋ ସ୍ୱଭାବ । ତାଙ୍କ ଭିତରେ ଜୀବନକୁ ସରସ କରିବାର ସମସ୍ତ ଉପାଦାନ ଥିଲା । ମୁଁ ତାହାର ଉପଯୋଗ କରିବାରେ ଅକ୍ଷମ ହୋଇଛି । ଏ ଉପଲବ୍ଧି ଆସିଲା ପରେ ମନ ହେଉଛି, ସେ ଫେରି ଆସନ୍ତେ କି- ମୁଁ ମୋର ଆଚରଣ ସଂଶୋଧନ କରନ୍ତି । ଚେଷ୍ଟା କରି ମାୟାର କୁହେଳି ସୃଷ୍ଟି କରି ରସିକ ସାଜନ୍ତି ଏବଂ ଦେଖନ୍ତି ତାଙ୍କ ଭଲ ପାଇବା ମୋତେ ମିଳୁଛି କି ନାହିଁ । ମୋର ଆବିଷ୍କାରର ସତ୍ୟତା ପରୀକ୍ଷା କରନ୍ତି । କିନ୍ତୁ ହାୟ- ଫୁଲ ଝଡ଼ିଲେ ଆଉ କ'ଣ ବୃନ୍ତରେ ଲାଗେ ? ହାୟ-ହାୟ କରି ଅବଶୋଷ ନେଇ ମୋତେ ଚଳିବାକୁ ପଡ଼ିବ । ହେଲେ ମୋର ଏ ସ୍ୱୀୟ ଅନୁଭବ ପ୍ରସୂତ ମତବାଦର ପ୍ରଭାବ ଯଦି କାହା ଉପରେ ପଡ଼େ ବା ଏହାର ଉପାଦେୟତା ସ୍ୱୀକୃତ ହୁଏ, ମୁଁ ନିଶ୍ଚୟ ଖୁସିହେବି ।

## ।। ବୋଉ ।।

ମୋ ବୋଉର ମୃତ୍ୟୁ ବିଷୟକ ଘଟଣା ପୂର୍ବରୁ କହିଛି। ଭୁଲ୍ ହେଉ ବା ଠିକ୍, ଅନଭିଜ୍ଞତା ଆଉ ଅକ୍ଷମତା ଜନିତ ମୋର ଅବହେଳାରୁ ତାହାର ଅଳ୍ପ ବୟସରେ ମୃତ୍ୟୁ ହୋଇଗଲା ବୋଲି ମୋର ଭାବନା ମଧ୍ୟ ବ୍ୟକ୍ତ କରିଛି। ଜୀବନର ସକଳ ଘାତ ପ୍ରତିଘାତ ଭିତରେ ତା ମୃତ୍ୟୁପରେ ଦୀର୍ଘ ଚାଳିଶରୁ ଊର୍ଦ୍ଧ୍ୱ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ ତାହାର ସ୍ମୃତି ମୋ ଭିତରେ ବରାବର ଜୀବନ୍ତ ରହିଛି। ତିରିଶ ବର୍ଷ ବୟସରେ ବିଧବା ହୋଇ ପୂରା ସହାୟ ଶୂନ୍ୟ ଅବସ୍ଥାରେ ସେ ଦୀର୍ଘଦିନ ବଞ୍ଚିଥିଲା। ମୁଁ ଚାକିରି କଲା ପରେ ଜାଣି ତା ଦୁଃଖର ଅମା ଅନ୍ଧକାର ଘୁଞ୍ଚିଥିଲା। ହେଲେ ଯଦିଓ ମୁଁ ତାକୁ ବରାବର ମୋ ପାଖରେ ରଖିଥିଲି, ତାହା ମନ ଜାଣି କେବେ କିଛି କରିନାହିଁ ବୋଲି ମୋର ଧାରଣା ମୋତେ ବରାବର ଦୁଃଖାଭିଭୂତ କରେ। ବାଙ୍କିରେ ଥିଲାବେଳେ ମୁଁ ତାକୁ ପୁରୀରେ ଜଗନ୍ନାଥ, ଭୁବନେଶ୍ୱରରେ ଲିଙ୍ଗରାଜ, ସତ୍ୟବାଦୀରେ ସାକ୍ଷୀଗୋପାଳ, ଓଡ଼ଗାଁରେ ରଘୁନାଥ, କଣ୍ଟିଲୋରେ ନୀଳମାଧବ ପ୍ରଭୃତି ଦେବତାଙ୍କର ଦର୍ଶନ କରାଇ ପାରିଥିଲି। ପୂର୍ବରୁ ଯାଜପୁରରେ ବିରଜା ଓ ବାଙ୍କିରେ ଚର୍ଚ୍ଚିକା ଠାକୁରାଣୀ ଦର୍ଶନ ମଧ୍ୟ କରାଇଛି। ଏଇ ଏକମାତ୍ର କାମଦ୍ୱାରା ତା ମନରେ ମୁଁ ଆନନ୍ଦ ଦେଇପାରିଥିଲି ବୋଲି ମୋର ବିଶ୍ୱାସ। ବଦଳି ହୋଇ କଟକ ଚାକିରିରେ ମୁଁ ଜଏନ୍ କଲି ୫୭ ମସିହା ଜାନୁଆରୀ ୨୯ ତାରିଖରେ। ବୋଉର ସେହିବର୍ଷ ଅକ୍ଟୋବର ମାସରେ ମହାପ୍ରୟାଣ ଘଟିଲା। ଏଇ ୮/୯ ମାସ ରହଣି ଭିତରେ ମୁଁ ତାକୁ କଟକ ଚଣ୍ଡୀ ମନ୍ଦିରକୁ ଆଣିପାରି ନଥିଲି। ସେତେବେଳେ ଚଣ୍ଡୀମନ୍ଦିରର ଅବଶ୍ୟ ଏତେ ପ୍ରସିଦ୍ଧି ଆସିନଥିଲା। ତା ମନରେ ଚଣ୍ଡୀ ଦର୍ଶନ ପାଇଁ ଇଚ୍ଛା ଥିବା କଥା ମଧ ସେ କେବେ ମୋତେ କହିନାହିଁ। ଦିନେ ମୋର ଜଣେ ସମ୍ପର୍କୀୟ ଯେ କି ତାହାର ନାତି ହିସାବ ହେବ ଆମ ବସାକୁ ଆସିଥିଲେ। ସେ ତାଙ୍କୁ କହିବାର ମୁଁ ଶୁଣିଲି- ଆରେ, ମତେ ଟିକେ ଚଣ୍ଡୀ ମନ୍ଦିର ନେଇଯାଉନୁ। ସେ ଉତ୍ତରରେ କହିଲେ, ''ତୁ ତ ନିଜେ ଗୋଟିଏ ଚଣ୍ଡୀ। ଆଉ ତୁ କ'ଣ ଚଣ୍ଡୀ ଦେଖିବୁ''। ଏକଥା ଏଇଠି ରହିଲା। ସେ ଚଣ୍ଡୀ ଦେଖିପାରିଲା ନାହିଁ- ମରିଗଲା, ଏକଥା ମୋର ସବୁବେଳେ ମନେ ପଡ଼ି ମନରେ ଦୁଃଖ ସଙ୍ଗେ ନିଜ ପ୍ରତି ଅତି ହେୟଭାବର ସଞ୍ଚାର କରେ। ମୁଁ ଭାବେ-ମୁଁ ପୁଅ ହୋଇ ଯଦି ମାଆର ମନ ବୁଝିପାରିଲି ନାହିଁ, ତାହା ହେଲେ ମୁଁ କି ପୁଅ।

ସେ ସ୍ନେହ, ସରଳତା ଓ ଅନାବିଳତାର ପ୍ରତୀକ ଥିଲା। ସମସ୍ତଙ୍କୁ-ସଂପର୍କ ନିର୍ବିଶେଷରେ ଯେ ଆମ ଘରକୁ ଆସେ- ସ୍ୱାଭାବିକ ସ୍ନେହ ଆଦର ଅର୍ପଣ କରୁଥିଲା। ଆମ ଗାଁ ଘରେ ବଡ଼ବାପାଙ୍କ ପୁଅ ଝିଅମାନେ ତା ପ୍ରତି ବହୁତ ବହୁତ ଆସକ୍ତ ଥିଲେ। ଆମେ ପୃଥକ୍ ହୋଇ ଚଳିଲେ ମଧ ସେମାନଙ୍କ ଚଳଣିରେ ଖୁଡ଼ି ପାଖରେ ପୃଥକତାର ଚିହ୍ନ ନଥିଲା। ମୋ ଭାଇଙ୍କ ସ୍ତ୍ରୀ ସେମାନଙ୍କର ଏ ପ୍ରକାର ଆଚରଣକୁ ଭଲ ପାଆନ୍ତି ନାହିଁ। ପରୋକ୍ଷରେ

ଅପ୍ରୀତିକର ମନ୍ତବ୍ୟ କରନ୍ତି। ସେମାନେ ଏହା ଶୁଣିଲେ କହନ୍ତି– ଖୁଡ଼ିଥିବାଯାଏ ଏପରି ଚାଲିବ। ଏହାକୁ କେହି ବନ୍ଦ କରିପାରିବେ ନାହିଁ। ମୁଁ ବାଙ୍କିରେ ଥିଲାବେଳେ ମୋର ଦୁଇ ତିନିଜଣ ଘନିଷ୍ଠ ସହକର୍ମୀ ଆମ ଘରକୁ ବରାବର ଆସନ୍ତି ଓ ତାହାଠାରୁ ଯେଉଁ ସ୍ନେହ ଆଦର ପାଇଛନ୍ତି, ତାହା ସେମାନେ ଏବେ ବି ଭୁଲି ନାହାନ୍ତି। ଜଣେ ବନ୍ଧୁ ବୋଉର ସ୍ମୃତିଚାରଣ କରି କହନ୍ତି, ମାଉସୀ ଯେତେବେଳେ ତା ଶ୍ୱଶୁର କଥା ଗପେ, ତା'ର ତନ୍ମୟତା ଦେଖି ମୁଁ ଭାବେ ମାଉସୀ ଆଉ ଏ ଧରାରେ ନାହିଁ। ଏଥିରୁ ତାହାର ମୋ ଜେଜେଙ୍କ ପ୍ରତି (ଶ୍ୱଶୁର ପ୍ରତି) କେତେ ଆଦର, ଭକ୍ତି ଓ ତାଙ୍କର ମହନୀୟତାରେ ସେ କେତେ ଉଦ୍‌ବୁଦ୍ଧ, ତାହାର ସୂଚନା ମିଳେ।

ମୋ ସ୍ତ୍ରୀଙ୍କୁ ସେ ବହୁତ ଭଲ ପାଉଥିଲା। କୌଣସି କାମଦାମ ତାଙ୍କୁ କରାଇ ଦିଏନାହିଁ। ଏପରିକି ତାଙ୍କର ଦେହ ପା କିଛି ହେଲେ ସେ ତାଙ୍କ ପାଖରେ ବସି ଦେହହାତ ଆଉଁସି ଦେବାର ମୁଁ ଦେଖିଛି। ବିବାହ ପରେ ମୁଁ ତାଙ୍କର ରୂପକୁ ନେଇ ଟିକେ କ'ଣ ବ୍ୟଙ୍ଗ ବିଦ୍ରୁପ କରି କହିଲି। ବୋଉ ମତେ କହିଲା– ସେମିତି କାହିଁକି କହୁଛୁ। ତାହାର ପାଦ ଦୁଇଟି କେଡ଼େ ସୁନ୍ଦର। ମୁଁ ବୋଉର ଏ କଥା ଶୁଣି ଆଶ୍ଚର୍ଯ୍ୟ ହେଲି। ଭାବିଲି–ରୂପପ୍ରେମୀ ସାଧାରଣତଃ ନାରୀର ମୁହଁ ଛାତି ଉପରେ ଆଖିପକାଏ। ଇଏ କ'ଣ ପାଦକଥା କହୁଛି। ତାହାପରେ ମୁଁ ତାଙ୍କ ପାଦକୁ ନିରୀକ୍ଷଣ କଲି ଏବଂ ଦେଖିଲି–ପ୍ରକୃତରେ ପାଦ ଦୁଇଟି ସୁନ୍ଦର। ନାରୀର ସୌନ୍ଦର୍ଯ୍ୟ ବିଚାରରେ ପାଦର ମଧ୍ୟ ସ୍ଥାନ ଅଛି, ଏକଥା ମୁଁ ଏହିଠାରୁ ଜାଣିଲି। ମୋ ସ୍ତ୍ରୀ ମଧ ମୋ ବୋଉ ପ୍ରତି ଅତ୍ୟନ୍ତ ଅନୁଗତ ଓ ଶ୍ରଦ୍ଧା–ଭକ୍ତି ସଂପନ୍ନା ଥିଲେ। କାହା କାହା ଆଗରେ ସେ କହିବାର ମୁଁ ଶୁଣିଛି– ବାହାଘରରେ ଗୋଟିଏ ଶାଶୁଛଡ଼ା ମୁଁ ଆଉ କିଛି ପାଇନାହିଁ। ତାଙ୍କର ଏ ଉକ୍ତିର ସତ୍ୟତା, ଯଥାର୍ଥ୍ୟ ସୁଦୂର ପ୍ରସାରୀ ଫଳ ମୁଁ ଜୀବନସାରା ଅନୁଭବ କରିଛି।

ବୋଉ ମୋ ପାଖରେ ଥିଲେ ମଧ ସେ ଭାଇଙ୍କୁ ବେଶୀ ଭଲ ପାଏ ବୋଲି ମୁଁ ଅନୁଭବ କରେ। ଏହା ସ୍ୱାଭାବିକ। ସେ ତାହାର ପ୍ରଥମ ସନ୍ତାନ ଓ ତାଙ୍କୁ ହିଁ ଅନାଇ ସେ ତାହାର ଦୁଃଖର ଦିନ ବଞ୍ଚିଛି। ତେଣୁ ସେ ତାହାର ଦୁଃଖୀର ସଙ୍ଗାଳି କହିଲେ ଅତ୍ୟୁକ୍ତି ହେବନାହିଁ। ମୁଁ ସେତେବେଳେ ଭାଇଙ୍କୁ ପ୍ରତି ମାସରେ କିଛି କିଛି ଟଙ୍କା ଦେଉଥିଲି। ମାସର ପହିଲାବେଳକୁ ବୋଉର ଦୁଃଖ ଆରମ୍ଭ ହୋଇଯାଏ। କାଳେ ମୁଁ ଟଙ୍କା ନ ପଠାଇବି– ଭାଇ ହଇରାଣ ହେବେ– ଏହି ଆଶଙ୍କାରେ ସେ ମ୍ରିୟମାଣ ହୋଇଯାଏ। ମୁଁ ଟଙ୍କା ପଠାଇବାରେ କେବେ ହେଳା କରେନାହିଁ। ଏଇଟା ମୋର ସୁଗୁଣ କି ଦୁର୍ଗୁଣ– ହେଲେ ଏହା ମୋର ସ୍ୱଭାବଗତ। ମୋର ସ୍ତ୍ରୀ ବି ମୋର ଏ ସ୍ୱଭାବରେ ଅଭ୍ୟସ୍ତ ହୋଇ କ୍ରମେ ସକଳ ବିଷୟରେ ଉଦାସୀନ ହୋଇଗଲେ।

ମୋ ବୋଉ ବହୁତ ଦମ୍ଭିଲା ଚେହେରାର ଲୋକ ଥିଲା। ବହୁତ ପରିଶ୍ରମ କରିପାରୁଥିଲା। ଭୋକଶୋଷ ଭୁଲି ଅନ୍ୟମାନଙ୍କ ସେବା କରିବାରେ ସେ ସବୁବେଳେ ନିଜକୁ ନିୟୋଜିତ ରଖୁଥିଲା। ଆମେ ଭାଇ ଭଉଣୀଯାକ ଯେ ସମସ୍ତଙ୍କଠାରୁ ସ୍ନେହ ଆଦର ପାଉ, ମୁଁ ଭାବେ ଏହା କେବଳ ତା କର୍ମର ଫଳଶ୍ରୁତି।

ଆଜିକାଲି ପୁଅମାନେ ବାହାହେଲାପରେ ମାଆଠାରୁ ଦୂରେଇ ଯାଇ ସ୍ତ୍ରୀ ଆଡ଼କୁ ଅତିମାତ୍ରାରେ ଢଳୁଛନ୍ତି। ଏକଥା ମୁଁ ମୋର 'ଶୁଭଗ'ରେ ସ୍ଥାନିତ 'ଏକ ଅସମ୍ପୂର୍ଣ୍ଣ ଲୋକଗୀତିକା'ରେ ପ୍ରକାଶ କରିଛି। ସେଥିରୁ କେତୋଟି ଧାଡ଼ି ଲକ୍ଷଣୀୟ–

ଛାତୁ ନଥିଲ ତ କାନି ମୋହର
ବଡ଼ ହେଲେ ଯୁହୁଁ ହେଲି ଆସର

***

ଆମରତ ପୁଣି ଅଛି ସଂସାର
ସେ ଆଡ଼େ ନଜର ନାହିଁ ତାହାର ।

ହେଲେ ମୁଁ ଏ ପ୍ରକାର ଦୋଷରେ ଦୂଷିତ ହୋଇନାହିଁ ବୋଲି ମୋର ବିଶ୍ୱାସ । ମୁଁ ଭିନ୍ନ ଉପାଦାନରେ ଗଢ଼ା– ଏକଥା ମୁଁ କହୁନାହିଁ । କାରଣ ହେଲା ମୋର କାର୍ଯ୍ୟଶୈଳୀ ଓ ସ୍ୱଭାବ । ନୀରବରେ ମୋ କାମ ମୁଁ କରେ । କାହା ସହିତ ପରାମର୍ଶ କରେନାହିଁ କି ଆଲୋଚନା କରେନାହିଁ । ମୋ କର୍ତ୍ତବ୍ୟ ବିଷୟରେ ମୁଁ ଅତିମାତ୍ରାରେ ସଚେତନ ଥାଏ । ଅନ୍ୟ ସଂପୃକ୍ତ ବ୍ୟକ୍ତିମାନେ ଆବଶ୍ୟକତା ଅନୁଭବ କଲାପୂର୍ବରୁ ମୁଁ ଯାହା କରିବା କଥା କରିସାରିଥାଏ । ଅନ୍ୟମାନଙ୍କୁ ମତାମତ ଦେବାର ସୁଯୋଗ ମୁଁ ସୃଷ୍ଟି କରେନାହିଁ । ବୋଉ ବା ସ୍ତ୍ରୀଙ୍କର ଯଦି କିଛି ଅସୁବିଧା ହେଉଥିବ, ତାହା ତାଙ୍କର ନିଜସ୍ୱ । ଜଣକର ଅସୁବିଧା ଅନ୍ୟ ଜଣକର କାରସାଦିରୁ ଉପୁଜିଛି ବୋଲି ଧାରଣା ଆଣିବାର ପ୍ରଶ୍ନ ନଥାଏ ।

## ॥ ଗୀତାପାଠ ॥

ଶ୍ରୀମଦ୍ ଭଗବଦ୍ ଗୀତାର ମହନୀୟତା, ଗୀତାପାଠରେ ଉପାଦେୟତା ଓ ଆବଶ୍ୟକତା ବିଷୟରେ ମୁଁ କହିବାକୁ ଯାଉନାହିଁ। କହିଲେ ଯେ ଠିକ୍ ରୂପେ କହିପାରିବି ଏ ଭରସା ମୋର ନାହିଁ। କେବଳ ସେ ସମ୍ବନ୍ଧୀୟ ନିମ୍ନୋଦ୍ଧୃତ ଦୁଇଟି ଶ୍ଳୋକ ପ୍ରତି ଦୃଷ୍ଟି ଆକର୍ଷଣ କରି ସେ ପ୍ରସଙ୍ଗରୁ ନିବୃତ୍ତ ରହୁଛି।

(୧) ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ର ବିସ୍ତରୈଃ
ଯା ସ୍ୱୟଂ ପଦ୍ମ ନାଭସ୍ୟ ମୁଖ ପଦ୍ମାଦ୍ ବିନିସୃତା।

(୨) ସର୍ବୋପନିଷଦୋଗାବୋ ଦୋଗ୍ଧା ଗୋପାଳ ନନ୍ଦନଃ
ପାର୍ଥୋବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତ ମହତ୍।

ମୋର ଦୃଢ଼ ଅନୁଭବ ଯେ ଆମ୍ଭମାନଙ୍କର ଗୀତା ପଢ଼ିବା ଏକାନ୍ତ କର୍ତ୍ତବ୍ୟ। ମୁଁ ଚାକିରିରୁ ଅବସର ନେଲାପରେ ଗୀତା ପଢ଼ିଲି। ଯାହା କିଛି ଜାଣିଲି, ସେଥିରେ ମୋର ଆଖି ଖୋଲିଗଲାପରି ଲାଗିଲା। ତାହା ପୂର୍ବରୁ ମୁଁ ଯେପରି ଅନ୍ଧ ବା ସମ୍ପୂର୍ଣ୍ଣ ଅଜ୍ଞ ଥିଲି। ନିଜର ଉତ୍କୃଷ୍ଟ ଅନୁଭବଟିରେ ପୁଅମାନଙ୍କୁ ଭାଗୀଦାର କରିବାକୁ ଇଚ୍ଛା ନୁହେଁ, ବାରମ୍ବାର କହିଲି। କିନ୍ତୁ କେହି ସେ ଆଡ଼କୁ ମନ ଦେଲେନାହିଁ। ଗୋଟିଏ ପୁଅ ମତେ କହିଲା, "ତମେ ଅବସର ପରେ ଗୀତା ପଢ଼ିବାକୁ ଆରମ୍ଭ କଲ। ଆମକୁ କାହିଁକି ଏସବୁ ପଢ଼ିବାକୁ କହୁଛ ?" ମୋ ପାଖରେ ଯାର ଉତ୍ତର ନଥିଲା। ମୁଁ ନିରବ ରହିଲି। ବହୁଦିନ ତଳେ ମୁଁ ଗୋଟିଏ ଛୋଟ ବହି 'ଗୀତା ସୁଧା ସାର' ଛପାଇଥିଲି। ସେ ବହିରେ ସେମାନେ ଆଖି ପକାଇଥିବେ– ଏ ବିଶ୍ୱାସ ମୋର ନାହିଁ। ମନର ହତାଶ ଭାବକୁ 'ସଦ୍‌ଭାବନା' ବହିର ଗୋଟିଏ କବିତାରେ ପ୍ରକାଶ କରିଥିଲି। ସେଥିରୁ ଗୋଟିଏ ଧାଡ଼ି ଏଠାରେ ଉଦ୍ଧାର କରୁଛି।

ଗୀତା ପାଠକଥା ଦୂରେ ଥାଉ,
ଗୀତାସୁଧାସାର ନ ପଢ଼ିଲେ
ହୀନ ଜନ ଲେଖା ହୀନ ବୋଲି ପରା
ମନେ ମନେ ଭାବିନେଲେ।

ପୁଅମାନେ ପୃଥକ୍ ଭାବରେ ରହୁଛନ୍ତି। ଏବେ ଗୀତା·ପଢ଼ିଲେଣି କି ପଢୁଛନ୍ତି, ମୁଁ ସଠିକ୍ ଜାଣିନାହିଁ। ବଡ଼ପୁଅ ପାଖରେ ତ ଥାଏ। ମୁଁ ଦେଖେ, ସେ ମଝିରେ ମଝିରେ ଇଂଲିଶ୍ ଓ ଓଡ଼ିଆ ଭାଷାରେ ଲିଖିତ ବଡ଼ ବଡ଼

ଗୀତା ବହି କିଣିଆଣେ। ବେଳେ ବେଳେ ବସି ପଢ଼ିବାର ମଧ୍ୟ ଦେଖେ। ମୁଁ ନିଶ୍ଚିତ ସେ କୌଣସି ଗୋଟିଏ ଗୀତା ବହି ପଢ଼ି ଶେଷ କରିନାହିଁ। ମୁଁ ଅନୁମାନ କରୁଛି, ସବୁ ପୁଅଙ୍କର ଅବସ୍ଥା ଏଇଆ। କିଏ ଦଶପୃଷ୍ଠା ପଢ଼ିଥିଲେ ଅନ୍ୟ ପନ୍ଦର ପୃଷ୍ଠା ପଢ଼ିଥିବ। ସେମାନେ କେତେକେତେ ବହି ପଢ଼ିଛନ୍ତି ଏବଂ ଏବେ ମଧ୍ୟ ପଢୁଛନ୍ତି। ଗୀତା ସେହିପରି ଗୋଟିଏ ବହି। ସେଥିରୁ କିଏ କେତେ ବା କ'ଣ ଗ୍ରହଣ କଲା, ତାହା ଭିନ୍ନ କଥା। ମାତ୍ର ବହିଟିକୁ ଆମୂଳଚୂଳ ପଢ଼ିବାରେ ଅସୁବିଧା କ'ଣ ? ମୁଁ ଭାବୁଛି, ସେମାନେ ବିଜ୍ଞାନ ଭିତ୍ତିକ ଆଭିମୁଖ୍ୟ ପୋଷଣ କରୁଥିବାରୁ ବୋଧେ ଗୀତାରୁ ପଠିତ କଥା–ଯାହା ମୁଖ୍ୟତଃ ବିଶ୍ୱାସମୂଳକ–ତାଙ୍କ ମନରେ ରସ ବା ଆବେଗ ସୃଷ୍ଟି କରିପାରୁ ନାହିଁ। ତେଣୁ ଗୀତା ପାଠରେ ନିଷ୍ଠା ଆସୁନାହିଁ। ଏହିପରି ଭାବି ସନ୍ତୁଷ୍ଟ ରହିବା ଛଡ଼ା ମୋ ପାଇଁ ଆଉ କି ଉପାୟ ଅଛି। ଗୁରୁ ଶିଷ୍ୟକୁ ଉପଦେଶ ଦେଇ ପ୍ରଶିକ୍ଷିତ କରନ୍ତି। ଗୁରୁଜନମାନଙ୍କ କଥା ପାଳନକରି ଲୋକ କେତେ କଥା ଶିଖନ୍ତି। ମୁଁ ଏଇ କାମଟି କେବଳ–ଅନ୍ୟ କୌଣସି କାମ ମୁଁ ବରାଦ କରିନାହିଁ,– ମୋ ପୁଅମାନଙ୍କ ଦ୍ୱାରା କରାଇ ପାରିଲି ନାହିଁ। ଏଥିରୁ ମୋର ଗୁରୁଜନପଣ ବା ବାପ ହିସାବରେ ଗୁରୁପଣର ମୂଲ୍ୟାୟନ ଲୋକେ ଯେପରି କରିବେ।

## ।। ଶୁକଦେଈଙ୍କ ଠାକୁର ପୂଜାରୁ... ।।

ଏ ଶୁକଦେଈ ବାଙ୍କିରାଣୀ ଶୁକଦେଈ ନୁହନ୍ତି କିମ୍ବା ଉଚ୍ଚମାନର ଧନସମ୍ପଦ ବା ପଦପଦବୀର ଅଧିକାରିଣୀ ନୁହନ୍ତି। ସେ ଅତି ସାଧାରଣ ଗୃହକର୍ମନିପୁଣା ନାରୀଟିଏ। ମାତ୍ର ତାଙ୍କର ଆଚରଣ, କାର୍ଯ୍ୟାବଳୀ ବିଶେଷତଃ ଠାକୁର ପୂଜାପଦ୍ଧତି, ତହିଁରେ ଶ୍ରଦ୍ଧା ଆଉ ନିଷ୍ଠା ଅସାଧାରଣ। ଅସାଧାରଣ ମୁଁ ଏଇଥିପାଇଁ କହୁଛି ଯେ ଠାକୁରପୂଜାରେ ଏପରି ଶ୍ରଦ୍ଧା ଆଉ ନିଷ୍ଠା ମୁଁ ଆଉ କାହାଠି ଦେଖିନାହିଁ। ପୁଣି ମୁଁ ନିଜେ ପୂଜାପୂଜି, ଓଷାବ୍ରତ କିଛି କରେନାହିଁ। ମନ୍ଦିରଯାଇ ଦେବଦେବୀ ଦର୍ଶନ କରିବାରେ ମୋର ଆଗ୍ରହ ନାହିଁ। କିନ୍ତୁ ସେ ଦୈନନ୍ଦିନ ଘରେ ଠାକୁର ପୂଜା ବ୍ୟତୀତ ନାନା ଓଷାବ୍ରତ ଏକାଦଶୀ ଆଦି ପାଳନ କରନ୍ତି। ବର୍ଷରେ ଅନ୍ୟୁନ, ପଚାଶ ଷାଠିଏ ଦିନ ସେ ଉପାସ କରନ୍ତି। ନିର୍ଦ୍ଦିଷ୍ଟ ଦିନମାନଙ୍କରେ ମନ୍ଦିର ଯାଆନ୍ତି। ମୁଁ ତାଙ୍କର ଏ ଆଚରଣକୁ ବିରୋଧ ନକଲେ ମଧ୍ୟ ବେଳେବେଳେ ପରିହାସ କରି କହେ, ତୁମର ପୂଜାରେ ଠାକୁର ଅଣକାଇଦି ହୋଇ ଆଶୀର୍ବାଦ ପରିବର୍ତ୍ତେ ଅଭିଶାପ ଦେଉଛନ୍ତି।

ସେ କଥାକୁ କର୍ଣ୍ଣପାତ କରନ୍ତି ନାହିଁ କିମ୍ବା ତାଙ୍କ ଆଚରଣରେ ପରିବର୍ତ୍ତନ ଘଟେନାହିଁ। ମୁଁ ଗୀତା ପଢ଼େ। ସେ ମୋତେ କହନ୍ତି–"ତମେ ଯେତେବେଳେ ସେତେବେଳେ ଗୀତା ପଢ଼ୁଛ। ପୁଣି ବହିକୁ ଯେଉଁଠି ନାଇଁ ସେଇଠି–ଏପରିକି ଖାଇବା ଟେବୁଲରେ ମଧ୍ୟ ରଖି ଦେଉଛ। ଗାଧୋଇସାରି ଆସନରେ ବସି ପବିତ୍ର ଭାବରେ ପ୍ରତିଦିନ ଅଧ୍ୟାୟେ ଅଧ୍ୟାୟେ ପଢ଼ୁନ।"

ମୁଁ ଏକଥାକୁ ଶୁଣି ନଶୁଣିଲା ପରି ରହେ। ମୁଁ ଭାବେ–ମୁଁ ଗୀତା ପଢ଼ୁଛି– ବିଷୟ ଜାଣିବା ପାଇଁ। ସେ ଜାଣିବାରୁ ମୋତେ ଯଦି କିଛି ମିଳିଲା ତ ମିଳିଲା – ନମିଳିଲେ ନାହିଁ। ଶୁଆ ସାରିପରି ଆବୃତ୍ତି କରିବାକୁ ମତେ ଭଲଲାଗେ ନାହିଁ। ତାଙ୍କର ପଢ଼ାପଢ଼ିରେ କୌଣସି ପାରଦର୍ଶିତା ନାହିଁ। ତାଙ୍କର ଦୌଡ଼ ଲକ୍ଷ୍ମୀପୁରାଣ ଯାଏ। ମଝିରେ ମଝିରେ କେବେବା ପୂଜାସାରି ଲକ୍ଷ୍ମୀପୁରାଣ ପଢନ୍ତି। ଶାସ୍ତ୍ରପୁରାଣ, ଈଶ୍ୱର ତତ୍ତ୍ୱ ପୂଜା ନିୟମାଦି ବିଷୟରେ ତାଙ୍କର କିଛି ଜ୍ଞାନନାହିଁ। ସେ ଯେତିକି ଜାଣିଛନ୍ତି ବା ଯାହା ବୁଝିଛନ୍ତି, ସେଇଆକୁ ଶ୍ରଦ୍ଧା ଓ ନିଷ୍ଠାର ସହ ତ୍ରୁଟି ବିଚ୍ୟୁତି ନକରି ପାଳନ କରନ୍ତି।

ଏଇ ହେଉଛି ତାଙ୍କର ବୈଶିଷ୍ଟ୍ୟ। ଏହି ନାରୀଟିର ଆଚରଣ ଯାହା ମୋ ଆଚରଣଠାରୁ ସମ୍ପୂର୍ଣ୍ଣ ଭିନ୍ନ– ମୋତେ କୌତୂହଳୀ କଲା ତାହାର କାରଣଟିକୁ ଚିହ୍ନଟ କରିବା ପାଇଁ। ମୁଁ ଜାଣିଲି କର୍ମ ସେ କରୁନାହାନ୍ତି କି ମୁଁ କରୁନାହିଁ। ଏଠି 'ସେ' ଓ 'ମୁଁ'ର ଅର୍ଥ ଆମ ଶରୀରରେ ଥିବା ଆତ୍ମା। ସମସ୍ତ କର୍ମ ପ୍ରକୃତି କରୁଛି। ସେ ପ୍ରକୃତି ପୁଣି ଲୋକରୁ ଲୋକ ଭିନ୍ନ। ସମସ୍ତେ ନିଜର ପ୍ରକୃତି ଅନୁରୂପ କର୍ମ କରୁଛନ୍ତି। ସେ ଅତି ବଳଶାଳୀ। ତାକୁ ଜ୍ଞାନୀଲୋକମାନେ ମଧ୍ୟ ଏଡିପାରନ୍ତି ନାହିଁ। ଗୋଟିଏ କାମ ଭୁଲ ବୋଲି ଜାଣିଲେ ମଧ୍ୟ ପ୍ରକୃତି ଅନୁରୂପ ପ୍ରକୃତିର

ବଶ ହୋଇ ତାହା କରନ୍ତି। ଏଥିରୁ ବେଶ୍ ବୁଝାଗଲା ଯେ ଶୁକଦେଈଙ୍କର ଆଉ ମୋର ଆଚରଣ କାହିଁକି ଭିନ୍ନ ହୋଇଛି। ସେ ତାଙ୍କ ପ୍ରକୃତି ଅନୁସାରେ କାମ କରୁଛନ୍ତି ଆଉ ମୁଁ ମୋ ପ୍ରକୃତି ଅନୁସାରେ କାମ କରୁଛି। ଉଭୟ ପରସ୍ପରର ବାରଣ ବା ଉପଦେଶ ନ ମାନିବାର କାରଣ ମଧ୍ୟ ପରିଷ୍କାର ହୋଇଗଲା। ଉଭୟ ପ୍ରକୃତି କବଳିତ। ଯାହାକୁ ଜ୍ଞାନୀ ଲୋକମାନେ ଏଡିପାରନ୍ତି ନାହିଁ, ଆମେ ବା କିବା ଲୋକ ଯେ ପ୍ରକୃତିକୁ ଏଡିଦେଇ ଭିନ୍ନପ୍ରକାର କାମ କରିବୁ ? ଗୀତାର ମୁଖ୍ୟତଃ ଯେଉଁ ଶ୍ଳୋକ ଦୁଇଟିରୁ ଏ ତଥ୍ୟ ଅବଗତ ହେଲି, ତାହା ଏଠାରେ ଉଦ୍ଧାର କରୁଛି।

ପ୍ରକୃତେଃ କ୍ରିୟମାଣାନି, ଗୁଣୈଃ କର୍ମାଣି ସର୍ବଶଃ

ଅହଂକାର ବି ମୁଢ଼ାତ୍ମା, କର୍ତ୍ତାହମିତି ମନ୍ୟତେ। (ଗୀତା ଅ-୨୭ ଶ୍ଳୋକ)

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ, ପ୍ରକୃତେ ଜ୍ଞାନବାନପି।

ପ୍ରକୃତିଂ ଯାନ୍ତି ଭୂତାନି, ନିଗ୍ରହଃ କିଂ କରିଷ୍ୟତି। (ଗୀତା ୩ଅ-୩୩ ଶ୍ଳୋକ)

ତେବେ ଏ ପ୍ରକୃତି କଅଣ ? ଏହାର ସ୍ଥିତି କେଉଁଠି ? ଏ କିପରି କର୍ମକରେ ? ଏହାର ଗୁଣମାନଙ୍କ ଗୁଣି କିଏ ? ଏହା କିପରି ଲୋକରୁଲୋକ ଭିନ୍ନ ହୁଏ ? ଏ ଏତେ ବଳଶାଳୀ କାହିଁକି ? ଏ ପ୍ରଶ୍ନ ଗୁଡ଼ିକର ଉତ୍ତର ମୋତେ ଗୀତାରୁ ପ୍ରାପ୍ତହେଲା। ଗୀତାର ସପ୍ତମ ଅଧ୍ୟାୟରେ ଚତୁର୍ଥ ଶ୍ଳୋକ, ତ୍ରୟୋଦଶ ଅଧ୍ୟାୟର ପଞ୍ଚମ ଶ୍ଳୋକ ଓ ଚତୁର୍ଦ୍ଦଶ ଅଧ୍ୟାୟର ପଞ୍ଚମ ଶ୍ଳୋକ ମୁଖ୍ୟତଃ ପ୍ରକୃତି ସମ୍ବନ୍ଧୀୟ ଧାରଣା ମୋତେ ପ୍ରଦାନକଲା। ସେ ଶ୍ଳୋକ ତିନୋଟି ଏଠାରେ ଉଦ୍ଧାର କଲି।

ଭୂମିରାପୋନଳୋବାୟୁଃ, ଖଂ ମନୋବୁଦ୍ଧିରେବଚ

ଅହଙ୍କାର ଇତୀୟଂ ମେ, ଭିନ୍ନା ପ୍ରକୃତିରଷ୍ଟଧା। (ଗୀତା ୭ଅ-୪ ଶ୍ଳୋକ)

ମହାଭୁତାନ୍ୟ ହଂକାରୋ, ବୁଦ୍ଧିରବ୍ୟକ୍ତମେବଚ

ଇନ୍ଦ୍ରିୟାଣି ଦଶୈକଞ୍ଚ, ପଞ୍ଚତେନ୍ଦ୍ରିୟ ଗୋଚରାଃ। (ଗୀତା ୧୩ ଅ-୫ ଶ୍ଳୋକ)

ସତ୍ୱଂ ରଜସ୍ତମ ଇତି, ଗୁଣାଃ ପ୍ରକୃତି ସମ୍ଭବାଃ

ନବଧ୍ନନ୍ତି ମହାବାହୋ, ଦେହେ ଦେହିନମବ୍ୟୟଂ। (ଗୀତା ୧୪ଅ-୫ ଶ୍ଳୋକ)

ଏଥିରୁ ଜଣାଗଲା ପ୍ରକୃତି ଦୁଇପ୍ରକାର-ଚେତନସତ୍ତା ପରା ଓ ଅଚେତନ ଅପରା। ଅପରା ପ୍ରକୃତି ୨୪ ଭାଗରେ ବିଭକ୍ତ। ପ୍ରକୃତି, ବୁଦ୍ଧି, ଅହଙ୍କାର, ପଞ୍ଚମହାଭୁତ (କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ) ପଞ୍ଚଜ୍ଞାନେନ୍ଦ୍ରିୟ (ଚକ୍ଷ, କର୍ଣ୍ଣ, ନାସା, ଜିହ୍ୱା, ତ୍ୱକ୍) ପଞ୍ଚ କର୍ମେନ୍ଦ୍ରିୟ (ବାକ୍, ପାଣି, ପାଦ, ବାୟୁ, ଉପସ୍ଥ) ପଞ୍ଚବିଷୟ (ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ଓ ମନ। ଏହାକୁ ଚତୁର୍ବିଂଶତି ତତ୍ତ୍ୱ କୁହାଯାଏ। ଆମ ଶରୀରକୁ ଅପରା ପ୍ରକୃତି କୁହାଯାଏ। ଶରୀର ଭିତରେ ଯେଉଁ ଆତ୍ମା ବା ଚେତନସତ୍ତା ଥାନ୍ତି, ତାଙ୍କୁ ପରା ପ୍ରକୃତି କୁହାଯାଏ। ଅପରା ପ୍ରକୃତିକୁ କ୍ଷେତ୍ର ମଧ୍ୟ କୁହାଯାଏ। ପରା ପ୍ରକୃତିକୁ କ୍ଷେତ୍ରଜ୍ଞ, ପୁରୁଷ କୁହାଯାଏ। ପରା ପ୍ରକୃତି କିଛି କର୍ମ କରନ୍ତି ନାହିଁ। ସେ ଶରୀର ଭିତରେ ନିଷ୍କ୍ରିୟ ନିଃସଙ୍ଗ ପରି ଅବସ୍ଥାନ କରନ୍ତି। ସବୁ ଦେହରେ ତ ଏକ ଆତ୍ମା। ସେ ଯଦି କର୍ମ କରୁଥାନ୍ତେ, ତେବେ ପୃଥିବୀ ସାରା କର୍ମଗୁଡ଼ାକ ଏକ ପ୍ରକାର ହୁଅନ୍ତା। ଅପରା ପ୍ରକୃତି ଜଡ଼ ହେଲେହେଁ ପରା ପ୍ରକୃତିଙ୍କ ସାନ୍ନିଧ୍ୟଲାଭ କରିବାରୁ ତାହାର କ୍ରିୟାଶକ୍ତି ଜାତ ହୁଏ। ପରା ପ୍ରକୃତି ବା ଆତ୍ମା ପରମାତ୍ମା ବା ଈଶ୍ୱରଙ୍କ ଅଖଣ୍ଡିତ ଅଂଶ। ଆତ୍ମା ପରମାତ୍ମା ଏକ, ଅଭିନ୍ନ। ପରା ପ୍ରକୃତି ଓ ଅପରା ପ୍ରକୃତି ଏପରି ଅଭେଦ୍ୟ ଭାବରେ ମିଳିତ ହୋଇଥାଆନ୍ତି, ଯେ, ଅନୁଭବ ବ୍ୟତୀତ ସ୍ୱତନ୍ତ୍ର ଭାବରେ ତାଙ୍କୁ ଜାଣିହୁଏ ନାହିଁ।

ଖଣ୍ଡେ ଲୌହକୁ ଅଗ୍ନିରେ ଉତ୍ତପ୍ତ କରି ଲୋହିତବର୍ଣ୍ଣ କଲେ ସେଥିରେ ଯେପରି ଅଗ୍ନି ଓ ଲୌହର ପ୍ରଭେଦ ବୁଝିହୁଏ ନାହିଁ, ସେହିପରି ପରା ଅପରା ପ୍ରଭେଦ ବୁଝି ହୁଏନାହିଁ। ପରା ପ୍ରକୃତି କିଛି କରନ୍ତି ନାହିଁ। ମାତ୍ର ସେ 'ମୁଁ କରୁଛି', 'ମୋର ଅଛି', 'ମୁଁ ସୁଖୀ', 'ମୁଁ ଦୁଖୀ', 'ମୁଁ ରୋଗୀ' ଇତ୍ୟାଦି କହୁଥାନ୍ତି ? ତାହାର କାରଣ ହେଲା, ଅପରା ପ୍ରକୃତି ବା ଶରୀର ବା କ୍ଷେତ୍ର ଯାହା କରୁଛି, ସେସବୁ ଭ୍ରମରେ ନିଃସଙ୍ଗ ପରା ପ୍ରକୃତିରେ ବା କ୍ଷେତ୍ରଜ୍ଞ, ବା ପୁରୁଷ ବା ଜୀବାତ୍ମାଙ୍କଠାରେ ଆରୋପିତ ହୁଏ। ଖଣ୍ଡେ ସ୍ୱଚ୍ଛ ସ୍ଫଟିକ ପାଖରେ ରକ୍ତବର୍ଣ୍ଣ ମନ୍ଦାର ଫୁଲଟିଏ ରଖିଲେ ସ୍ଫଟିକ ରକ୍ତବର୍ଣ୍ଣ ଧାରଣା କରେ ନାହିଁ। ମନ୍ଦାର ଫୁଲର ପ୍ରତିବିମ୍ବ ମାତ୍ର। ଅପରା ପ୍ରକୃତି ପୁଣି ତ୍ରିଗୁଣାତ୍ମକ-ସତ୍ୱ, ରଜ, ତମ। ଏହି ତିନିଗୁଣ ଏଥିରେ ସାମ୍ୟବସ୍ଥାରେ ଥାଏ। ଯେଉଁ ଗୁଣଟି ପ୍ରବଳ ଭାବରେ ପ୍ରକଟିତ ହୁଏ, କର୍ମମାନ ସେହି ଗୁଣ ଅନୁସାରେ ସଂଘଟିତ ହୁଏ। ସତ୍ୱ ଗୁଣର କାର୍ଯ୍ୟ ପ୍ରକାଶ, ରଜଗୁଣର କାର୍ଯ୍ୟ କର୍ମାସକ୍ତି ଓ ତମଗୁଣର କାର୍ଯ୍ୟ ଆଳସ୍ୟ, ପ୍ରମାଦ, ମୋହ।

ପ୍ରକୃତି ସମ୍ବନ୍ଧରେ ମୋଟାମୋଟି ଧାରଣା ମିଳିଲା। ଏବେ ଦେଖାଯାଉ ସେ କିପରି କାର୍ଯ୍ୟ କରେ। ଇନ୍ଦ୍ରିୟ ସହିତ ବିଷୟର ସଂଯୋଗ ହେଲେ ମନରେ କାମନା ଜାତ ହୁଏ। କାମ୍ୟ ବସ୍ତୁ ପ୍ରାପ୍ତି ପାଇଁ ମନ୍ତ୍ରବୁଦ୍ଧି ସାହାଯ୍ୟରେ ସଂକଳ୍ପ କରେ ଏବଂ କର୍ମେନ୍ଦ୍ରିୟ ମାନଙ୍କ ଦ୍ୱାରା ତାହା ସମ୍ପାଦିତ ହୁଏ। ଏଥିରୁ ଜଣାଯାଏ ଯେ ପ୍ରକୃତି ଅନ୍ତର୍ଗତ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନେ ହେଉଛନ୍ତି କର୍ମର ମୂଳ ଉତ୍ସ। ଏଠି ମନେ ରଖିବାକୁ ହେବ ଯେ ପ୍ରକୃତି ଗୁଣାତ୍ମିକା। ଅର୍ଥାତ୍ ମନର ଆକର୍ଷଣ କୌଣସି ନା କୌଣସି ଗୁଣଦ୍ୱାରା ପ୍ରଭାବିତ। ସତ୍ୱଗୁଣ ପ୍ରବଣ ହୋଇଥିଲେ ସତ୍ୱଭାବ, ରଜୋଗୁଣ ପ୍ରବଳ ହୋଇଥିଲେ ରଜଭାବ ଓ ତମଗୁଣ ପ୍ରବଳ ହୋଇଥିଲେ ତମଭାବ ଦ୍ୱାରା ମନର ରୁଚି ନିୟନ୍ତ୍ରିତ ହୁଏ। ମନ ଯେଉଁସବୁ କର୍ମ ବାରମ୍ବାର କରିବା ପାଇଁ ନିର୍ଦ୍ଦେଶନା ଦିଏ, ସେ କର୍ମପ୍ରତି ତାହାର ଶ୍ରଦ୍ଧା ଅଧିକ ବୋଲି ବୁଝିବାକୁ ହେବ। ଯେତେ କର୍ମ କରାଯାଏ, ସବୁଥିର ଛାପ, ଦାଗ ମନରେ ରହିଲେ ମଧ୍ୟ ଶ୍ରଦ୍ଧାଯୁକ୍ତ ଓ ବାରମ୍ବାର କୃତକର୍ମଗୁଡ଼ିକର ଛାପ ସ୍ଥାୟୀ ହୋଇଯାଏ। ଏହି ଛାପକୁ ସଂସ୍କାର କୁହାଯାଏ ଏବଂ ମନ ଏହି ସଂସ୍କାର ଦ୍ୱାରା ଗଠିତ, ପୁନର୍ଗଠିତ ପରିବର୍ତ୍ତିତ ହୁଏ। ଏହି ସଂସ୍କାର ପ୍ରକ୍ରିୟା ଗୋଟି ଏ ବ୍ୟବସାୟୀର ହିସାବଖାତା ପରି। ଦୈନନ୍ଦିନ ବିକ୍ରି ଖର୍ଚ୍ଚ ଚାଲେ। ସେସବୁ ହିସାବ ଖାତାରେ ଲେଖାଯାଏ। ବର୍ଷ ଶେଷକୁ ମୋଟା ମୋଟା ହିସାବଖାତା ଗଦା ହୋଇଯାଏ। ବର୍ଷ ଶେଷରେ ହିସାବ କରାଯାଏ। ହିସାବରୁ ଜଣାଯାଏ ହୁଏତ ପଚାଶ ହଜାର ଟଙ୍କା ଲାଭ କି ପାଞ୍ଚହଜାର ଟଙ୍କା କ୍ଷତି ହୋଇଛି। ମୋଟା ମୋଟା ହିସାବ ଖାତାର ନିର୍ଯ୍ୟାସ ହେଲା ଗୋଟିଏ ଅଙ୍କ- ପଚାଶ ହଜାର ଲାଭ କି ପାଞ୍ଚହଜାର କ୍ଷତି। ଏଇ ଅଙ୍କଟି ସେ ବ୍ୟବସାୟର ସଂସ୍କାର। ଏଇ ସଂସ୍କାରକୁ ନେଇ ସେ ପରବର୍ଷ କାମ ଆରମ୍ଭ କରେ। ଲାଭ ସଂସ୍କାରକୁ କାମ ଓ କ୍ଷତି ସଂସ୍କାରର କାମ ସମାନ ହେବ କି ? ବ୍ୟବସାୟର ଚେହେରା ତଦନୁଯାୟୀ ଭିନ୍ନ ହେବ ନାହିଁକି ? ମରଣ ସମୟରେ ଆତ୍ମା (ପରା ପ୍ରକୃତି ବା କ୍ଷେତ୍ରଜ୍ଞ) ସେହି ମନକୁ ନେଇ ନୂତନ ଶରୀରରେ ଅବସ୍ଥାନ କରନ୍ତି। ଏହାକୁ ପୁନର୍ଜନ୍ମ କୁହାଯାଏ। ସେହି ନୂତନ ଶରୀର, ଇନ୍ଦ୍ରିୟ, ପରିବେଶ, ଅବସ୍ଥା ଇତ୍ୟାଦିର ପ୍ରାପ୍ତି ମରଣ ସମୟର ଭାବନାଦ୍ୱାରା ନିୟନ୍ତ୍ରିତ ହୁଏ। ଏ ବିଷୟରେ ଗୀତାର ସଂପୃକ୍ତ ଶ୍ଳୋକ ଦୁଇଟି ନିମ୍ନରେ ଉଦ୍ଧାର କରାଗଲା।

**୧୫ଶ ଅଧ୍ୟାୟ–୮ ଶ୍ଳୋକ**

ଶରୀରଂ ଯଦବାପ୍ନୋତି, ଯଚ୍ଚାପ୍ୟୁତ୍‌କ୍ରାମତୀଶ୍ୱରଃ
ଗୃହୀତ୍ୱୈତାନି ସଂଯାତି, ବାୟୁର୍ଗନ୍ଧାନିବାଶୟାତ୍।

### ୮ମ ଅଧ୍ୟାୟ–୬ ଶ୍ଳୋକ

ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରଂ

ତଂ ତମେବୈତି କୌନ୍ତେୟ, ସଦା ତଦ୍‌ଭାବଭାବିତଃ।

ଏଥିରୁ ଜଣାଗଲା, ଆମେ ଜନ୍ମରେ ପୂର୍ବ ଜନ୍ମରେ କରିଥିବା କର୍ମରୁ ଜାତ ସଂସ୍କାର ଦ୍ୱାରା ଗଠିତ ମନର ନିର୍ଦ୍ଦେଶରେ (ଯାହାକୁ ଆମେ ଜନ୍ମ ସହିତ ପ୍ରାପ୍ତ ହୋଇଛୁ) କର୍ମ କରୁଅଛୁ। ଗତ ଜନ୍ମରେ ଆମେ କି ପ୍ରକାର କର୍ମ କରିଥିଲୁ, କିପରି ଭାବନା କରିଥିଲୁ, ସାଧୁ, ସଚ୍ଚୋଟ, ପଣ୍ଡିତ ଥିଲୁ କି ମୂର୍ଖ, ଖଣ୍ଡ ଥିଲୁ, ଏ ଜନ୍ମରେ ଆମେ ତାହା ଜାଣିପାରୁନାହିଁ। ଅର୍ଥାତ୍ ଆମର ସଂସ୍କାର କିପରି, ଭଲ କି ମନ୍ଦ, ତାହା କେଉଁ ଗୁଣ ପ୍ରଧାନ, ସାତ୍ତ୍ୱିକ, ରାଜସିକ କି ତାମସିକ, ଆମେ କିଛି ଜାଣିପାରୁ ନାହିଁ। ଆମେ ଜାଣୁନାହିଁ ସିନା, ମାତ୍ର ତଦନୁସାରେ କର୍ମ କରିଯାଉ। ଏ ଜନ୍ମରେ ଲବ୍ଧ ବୁଦ୍ଧି ବିଦ୍ୟା ସେପରି ବଳବାନ ହେଲେ ସିନା ମନର ପ୍ରେରଣାକୁ ଏଡ଼ିବ ? ତେଣୁ ସଂସ୍କାରକୁ ଏଡ଼ିବା ସହଜ ନୁହେଁ ବୋଲି ପୂର୍ବରୁ କୁହାଯାଇଛି।

ମନର ପ୍ରେରଣାରେ କର୍ମ ହେଉଛି। ସେ କର୍ମ ଛାପ ସଂସ୍କାର ରୂପରେ ମନରେ ପଡୁଛି ଏବଂ ମନକୁ ପରିବର୍ତ୍ତନ କରୁଛି। ପୁଣି କର୍ମ ହେଉଛି। ଏହିପରି ସର୍ବଦା କର୍ମ ଚାଲିଛି ଏବଂ ତତ୍‌ସଙ୍ଗେ ସଂସ୍କାର ସୃଷ୍ଟି ଚାଲିଛି। ଆମେ ସର୍ବଦା ସଂସ୍କାରର ଅଧୀନ। ଏହି ସଂସ୍କାରର ବିଭିନ୍ନ ନାମ ଅଛି। ଅଦୃଷ୍ଟ, ଭାଗ୍ୟ, ନିୟତି, କପାଳ, ସ୍ୱଭାବ, ପ୍ରାରବ୍ଧ ଓ ପ୍ରକୃତି। ଏହାର ଅଲଗା ସ୍ଥିତି ନାହିଁ। ମନର ଗୋଟିଏ ଅବସ୍ଥା। ଏ ଶବ୍ଦଗୁଡ଼ିକ ଆମେ ବହୁଳ ଭାବରେ ବ୍ୟବହାର କରୁ। କୌଣସି ଲୋକର ଆଚରଣ, କାର୍ଯ୍ୟାବଳୀ ଆଲୋଚନା କଲାବେଳେ ଭଲମନ୍ଦ ଉଭୟ କ୍ଷେତ୍ରରେ ଏ ଶବ୍ଦ ପ୍ରୟୋଗ କରୁ। ଯେପରି କହୁ, 'କପାଳ ଲିଖନ କେ କରିବ ଆନ', 'ଅଦୃଷ୍ଟ, ଭାଗ୍ୟ ନିୟତି କିଏ ବଦଳାଇ ପାରିବ', 'ଲୋକଟାର ସଂସ୍କାର ସେଇଆ, ସ୍ୱଭାବ ଛାଡ଼ିବ କିପରି'। ଏହିପରି ଭାବରେ ଭଲ, ମନ୍ଦ ଉଭୟ କର୍ମ ପାଇଁ ଏଗୁଡ଼ିକ ବ୍ୟବହାର କରାଯାଏ। ତାହା ଠିକ୍। ପ୍ରୟୋଗରେ କିଛି ଭୁଲ ହୋଇନାହିଁ। ମାତ୍ର ତାହାର ପ୍ରକୃତ ଅର୍ଥ ବୁଝୁନାହିଁ। ବିଧାତା ତା ଖିଆଲରେ ଯାହା ଧାର୍ଯ୍ୟ କରିଛି, ସେଇଆ ଘଟୁଛି, ବୋଲି ଆମର ଧାରଣା। ମାତ୍ର ପ୍ରକୃତରେ ଏହା ଆମର କର୍ମଦ୍ୱାରା ହିଁ ସୃଷ୍ଟ। ଏଥିରୁ ଜଣାଗଲା, ଆମେ ପୂର୍ବ ଜନ୍ମରେ ସୃଷ୍ଟ ସଂସ୍କାର ପ୍ରଭାବରେ ଏ ଜନ୍ମରେ କର୍ମ ସେହି ସଂସ୍କାର ଅନୁଯାୟୀ ଫଳ ଭୋଗୁଛୁ। ଏ ଜନ୍ମର କର୍ମ ସେହି ସଂସ୍କାର ଦ୍ୱାରା ପ୍ରଭାବିତ ହେଉଥିବାରୁ ପ୍ରକୃତପକ୍ଷେ ଏ ଜନ୍ମର ଅବସ୍ଥା ହିଁ ସେହି ସଂସ୍କାରର କରଣୀ ବୋଲି ବୁଝିବାକୁ ହେବ। ସଂସ୍କାର ଦ୍ୱାରା ଆମେ କିପରି ନିୟନ୍ତ୍ରିତ, ତାହାର ଭୁରି ଭୁରି ଉଦାହରଣ ଆମ ଆଖି ଆଗରେ ରହିଛି। ଜଣେ ଲୋକ କିଛି ନକରି ଐଶ୍ୱର୍ଯ୍ୟ ଭୋଗୁଥିଲାବେଳେ ଅନ୍ୟ ଜଣେ ବହୁ ପରିଶ୍ରମ କରି ପେଟକୁ ଦାନା ଯୋଗାଡ଼ କରି ପାରୁନାହିଁ। ବିନା ଯତ୍ନରେ ଜଣେ ବିଦ୍ୱାନ ହେଉଥିଲାବେଳେ ଅଜସ୍ର ଯତ୍ନ ସତ୍ତ୍ୱେ ଅନ୍ୟ ଜଣେ ବିଦ୍ୟାରେ ଅଗ୍ରଗତି ହାସଲ କରିପାରୁନାହିଁ। ଧନୀ ଘରେ ଗୋଟିଏ ଶିଶୁ ଜନ୍ମ ହୋଇ ସୁଖ ଭୋଗୁଥିଲାବେଳେ ଗରିବ ଘରେ ଜନ୍ମିଥିବା ଶିଶୁ ଅଶେଷ ଦୁଃଖ ଭୋଗ କରେ। ସେମାନେ କ'ଣ କର୍ମ କରି ସୁଖ ଦୁଃଖ ଭୋଗ କରନ୍ତି ? କର୍ମ କରିବାର ଶକ୍ତି ତ ସେମାନେ ଲାଭ କରିନଥାନ୍ତି, ସାଂସାରିକ ଜୀବନରେ ଭୋଗ ଐଶ୍ୱର୍ଯ୍ୟ ଭରି ରହିଥିଲାବେଳେ ତାକୁ ଉପେକ୍ଷା କରି ଦୁଃଖ କଷ୍ଟପୂର୍ଣ୍ଣ ସାଧୁ, ସନ୍ନ୍ୟାସୀ, ବାବାଜି (ଯାହା କୁହ) ଜୀବନ କେହି କେହି କିପରି ବାଛି ନିଅନ୍ତି ? ସଂସାରରେ ଜୀବିକା ନିର୍ବାହ ପାଇଁ ସହଜ, ସରଳ, ସୁଖକର ନାନାବିଧ ବୃତ୍ତି ଥିଲାବେଳେ କେହି କେହି ଅତି କଷ୍ଟକର, ନିକୃଷ୍ଟ ବୃତ୍ତି କାହିଁକି ବାଛି ନିଅନ୍ତି ? ପରିବେଶ, ପରିସ୍ଥିତି କ'ଣ ଏହାର

କାରଣ ? ଜଣକୁ ସୁବିଧା ପରିସ୍ଥିତି ଓ ଅନ୍ୟ ଜଣକୁ ଅସୁବିଧା ପରିସ୍ଥିତି ସେମାନଙ୍କର ଗତ ଜନ୍ମର ମରଣବେଳର ଭାବ ଅନୁସାରେ ମିଳିନାହିଁ କି ? କଥାରେ ଅଛି-ଭୋକକୁ ଭାତ, ଲାଜକୁ ଲୁଗା । ସମସ୍ତେ କ୍ଷୁଧା ନିବାରଣ ପାଇଁ ଭାତ ବା ଖାଦ୍ୟ ଖାଆନ୍ତି ଓ ଲଜ୍ଜା ନିବାରଣ ପାଇଁ ଲୁଗା (ପୋଷାକ) ପିନ୍ଧନ୍ତି । ମାତ୍ର ଏ ଖାଦ୍ୟ ଓ ପୋଷାକ ବିଷୟରେ ସମସ୍ତଙ୍କର ରୁଚି କ'ଣ ସମାନ ? ଖାଦ୍ୟ ଓ ପୋଷାକରେ ରୁଚି ଓ ଶ୍ରଦ୍ଧାର ବିଭିନ୍ନତା କାହିଁକି ରହୁଛି ? ବାଲ୍ୟକାଳରୁ କେହି ସାଧୁ ସଚ୍ଚୋଟ ହେବାର ଲକ୍ଷଣ ପ୍ରକଟ କଲେଅନ୍ୟ କେହି ଚୋର, ଖଣ୍ଡ, ଉଗ୍ର ହେବାର ଲକ୍ଷଣ ଦେଖାଏ ଏବଂ ଭବିଷ୍ୟତରେ ସେମାନେ ଠିକ୍ ସେଇଆ ହୁଅନ୍ତି ।

ଏହିସବୁ ଉଦାହରଣମାନଙ୍କରୁ ନିଃସନ୍ଦେହ ଭାବରେ ଜଣାଯାଉ ନାହିଁ କି ସଂସ୍କାର ଆମ କର୍ମ, ଆଚରଣ, ସୁଖ ଦୁଃଖ, ଭଲ ମନ୍ଦ ପ୍ରାପ୍ତିର ନିୟନ୍ତ୍ରକ ବୋଲି ? ଏହି ସଂସ୍କାର କଥାଟି କେବଳ ସକାମ କର୍ମୀଙ୍କ ପ୍ରତି ପ୍ରଯୁଜ୍ୟ । କାରଣ ନିଷ୍କାମ କର୍ମୀଙ୍କର ସଂସ୍କାର ବା ଅଦୃଷ୍ଟ ସୃଷ୍ଟି ହୁଏ ନାହିଁ । ସେମାନେ ଫଳ କାମନା ନକରି କର୍ମ କରୁଥିବାରୁ ବା କର୍ମ କରି ଫଳ ଭଗବାନଙ୍କୁ ଅର୍ପଣ କରୁଥିବାରୁ ତାଙ୍କର ସଂସ୍କାର ସୃଷ୍ଟି ହୁଏ ନାହିଁ । ତାଙ୍କର କର୍ମ କେବଳ ମନରୁ କଳୁଷ ଦୂରକରି ନିବୃତ୍ତି ହୋଇଯାଏ । ସେମାନଙ୍କର ପୁନର୍ଜନ୍ମ ହୁଏନାହିଁ ।

ଏ ସମସ୍ତ ଆଲୋଚନାରୁ ପ୍ରକୃତି, ତାହାର ଗୁଣ, କର୍ମ ପଦ୍ଧତି, ସଂସ୍କାରର ସୃଷ୍ଟି ଓ ତାହାର ପ୍ରଭାବ ବିଷୟରେ ଜାଣିଲେ । ଏବେ ଶୁକ ଦେଈଙ୍କ କଥା ଦେଖାଯାଉ । ସେ ତାଙ୍କ ପ୍ରକୃତି ଓ ସଂସ୍କାର ପ୍ରଭାବରେ ଶ୍ରଦ୍ଧା ଓ ନିଷ୍ଠାସହ ଠାକୁର ପୂଜା କରୁଛନ୍ତି । ଠାକୁର ପୂଜା ଗୋଟିଏ ପବିତ୍ର ଓ ଭଲ କାମ । ଏହା ନିଶ୍ଚିତ ଭାବେ ପ୍ରକୃତିର ସତ୍ତ୍ୱଭାବ ପ୍ରେରିତ । କାରଣ ଏ କାମ କେବେ ରାଜସିକ ବା ତାମସିକ ହୋଇ ନପାରେ । କାରଣ ରାଜସିକ ଓ ତାମସିକ ଲୋକମାନେ ଯକ୍ଷ, ରାକ୍ଷସ, ଭୂତ, ପ୍ରେତ ପୂଜା କରନ୍ତି । ଏ ଅନୁମାନ ଠିକ୍ ବୋଲି ଗୀତାର ୧୭ଶ ଅଧ୍ୟାୟ ୨ ଓ ୪ ଶ୍ଳୋକରୁ ପ୍ରତିପାଦିତ । ସେ ଶ୍ଳୋକ ଦୁଇଟି ଏଠାରେ ଉଦ୍ଧାର କରାଗଲା ।

**୧୭ଶ ଅଧ୍ୟାୟ-୨ ଶ୍ଳୋକ**

ତ୍ରିବିଧା ଭବତି ଶ୍ରଦ୍ଧା, ଦେହିନାଂ ସା ସ୍ୱଭାବଜା
ସାତ୍ତ୍ୱିକୀ, ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ ।

**୧୭ଶ ଅଧ୍ୟାୟ-୪ ଶ୍ଳୋକ**

ଯଜନ୍ତେ ସାତ୍ତ୍ୱିକା ଦେବାନ୍, ଯକ୍ଷ ରାକ୍ଷାଂସି ରାଜସାଃ
ପ୍ରେତାନ୍ ଭୂତଗଣାଂ ଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ।

ଏଥିରୁ ଜଣାଗଲା, ଶୁକଦେଈ ପୂର୍ବ ଜନ୍ମରେ ସାତ୍ତ୍ୱିକ କର୍ମ କରିଥିବାରୁ ସାତ୍ତ୍ୱିକ ସଂସ୍କାର ବଳରେ ଏ ଜନ୍ମରେ ତାଙ୍କର ସାତ୍ତ୍ୱିକ ଶ୍ରଦ୍ଧା ହୋଇଛି । ସାତ୍ତ୍ୱିକ ଶ୍ରଦ୍ଧା ହେବାରୁ ସେ ସତ୍ତ୍ୱଗୁଣୀ ବୋଲି ଜଣାଗଲା । ସତ୍ତ୍ୱଗୁଣୀମାନେ ହିଁ ଦେବତା ପୂଜା କରନ୍ତି । ଶାସ୍ତ୍ରଜ୍ଞାନ ନଥିବା ସେଥିରେ ପ୍ରତିବନ୍ଧକ ହୋଇପାରିବ ନାହିଁ । ଶୁକଦେଈଙ୍କର ଆଚରଣ ଓ ଅନ୍ୟାନ୍ୟ କାର୍ଯ୍ୟାବଳୀ ଅନୁଧ୍ୟାନ କଲେ ଜଣାଯିବ ସେ ପବିତ୍ର ଓ ଅନାବିଳ ମନର ଅଧିକାରିଣୀ । ସେ ବଡ଼ ନିରଳସ, କର୍ତ୍ତବ୍ୟନିଷ୍ଠ, ନୀତିନିଷ୍ଠ, ମିତଭାଷୀ ଓ ସଦା ସନ୍ତୁଷ୍ଟ । କୌଣସି ପରିସ୍ଥିତିରେ ସେ ବିଶୃଙ୍ଖଳା ବରଦାସ୍ତ କରନ୍ତି ନାହିଁ । ଶୌଚ, ସଦାଚାର ତାଙ୍କର ଆଚରଣର ବୈଶିଷ୍ଟ୍ୟ । ତାଙ୍କର ଏସବୁ ଗୁଣ ବିଚାର କଲେ ତାଙ୍କୁ ସତ୍ତ୍ୱଗୁଣୀ ବୋଲି ମାନିନେବାରେ କେହି କୁଣ୍ଠିତ ହେବେ ନାହିଁ ।

ଶୁକଦେଈଙ୍କ ଠାକୁର ପୂଜାରୁ କୌତୂହଳୀ ହୋଇ ଆଲୋଚନା, ମନନ ଅନୁଶୀଳନ ମାଧ୍ୟମରେ ମୁଁ ଏସବୁ ସତ୍ତ୍ୱରେ ଉପନୀତ ହେଲି । ମୋର ବିଶ୍ୱାସ, ଯେ ଲୋକର ଜୀବନଚର୍ଯ୍ୟା ଗୀତାରୂପ ଦର୍ପଣରେ ଅବଲୋକନ କଲେ ତାହାର ସ୍ୱରୂପର ଆଭାସ ମିଳିବ ।

# ।। ଅଭିମନ୍ୟୁର ସାଇକେଲ କିଣା ।।

'ଜେଜେ ମୋତେ ଗୋଟାଏ ସାଇକେଲ୍ କିଣିଦିଅ' ଏକଥା ମୋ ନାତି ଅଭିମନ୍ୟୁ ମତେ ପ୍ରାୟ ଦେଢ଼ବର୍ଷ ତଳେ କହିଥିଲା । ସେତେବେଳେ ସେ ୪ର୍ଥରେ ପଢୁଥିଲା ଏବଂ ସାଇକେଲ୍ ଚଢ଼ା ଶିଖି ସାରିଥିଲା । ଏବେ ସେ ପଞ୍ଚମରେ ପଢୁଛି । ସାଇକେଲ୍ ଚଳାଇବାରେ ଏକସ୍‌ପାର୍ଟ ମଧ୍ୟ ହୋଇଗଲାଣି । ଏହା ଭିତରେ ଏଇକଥା ପ୍ରାୟ ଶହେଥର ଉଠାଇଥିବ । ମାତ୍ର ତାହାର ସାଇକେଲ କିଣା ଏଯାବତ୍ ସଂଘଟିତ ହୋଇନାହିଁ । ମତେ ଏକଥା କହିବା ପୂର୍ବରୁ ନିଶ୍ଚୟ ସେ ତା ବୋଉକୁ କହିଛି । ପୃଥକ୍ ଭାବରେ ବୋଉକୁ ବି କହୁଛି, ମୋତେ ବି କହୁଛି । ବୋଉ ଓ ମୁଁ ଏକାଯାଗାରେ ଥିବା ସମୟରେ ମଧ୍ୟ ସେ କଥା ଉତ୍‌ଥାପନ କରେ । ଏହିପରି ସାଇକେଲ କିଣିବାର ଚେଷ୍ଟା ତାହାର ଚାଲୁ ରହିଛି ।

ଅଭିମନ୍ୟୁ ପିଲାଟି ବଡ଼ ପ୍ରଗଳ୍‌ଭ ଓ ଚଞ୍ଚଳ ସ୍ୱଭାବ ବିଶିଷ୍ଟ । ସେ ଶୁଣି ଶୁଣି ଓ ଟି.ଭି ଦେଖି ବହୁତ କଥା ଜାଣିଗଲାଣି । ସେ ଏତେକଥା ଜାଣିଲାଣି ଯେ ନିଜକୁ ସବ୍‌ଜାନ୍ତା ବୋଲି ମନେ କଲାଣି । କହିଲାବେଳେ ବଡ଼ ସାନ କିଛି ବିଚାର କରେ ନାହିଁ । ଯେତେ ବଡ଼ ମଣିଷ ହେଉ ସେ ତାଙ୍କୁ ଶିଖେଇବା ଢଙ୍ଗରେ ଭାଷଣ ଦିଏ । ସେ ଘରେ ଥିଲାବେଳେ ଯିଏ ଯେଉଁଠି କଥାଭାଷା ହେଉଥାନ୍ତୁ, ଅଭିମନ୍ୟୁ ସେଠି ନିଶ୍ଚୟ ମୁଖ୍ୟବକ୍ତା । କେବଳ ତା' ବାପାଙ୍କର ଉପସ୍ଥିତି ବେଳେ ସେ ଗୋଟିଏ ଭିନ୍ନ ପିଲା ।

ଅଭିମନ୍ୟୁ ବେଳେ ବେଳେ ମୋ ପାଖରେ ଆସି ବସିଯାଏ । ନାନା ବିଷୟରେ ଭାଷଣ ଶୁଣାଏ । ସେହି ଭାଷଣ ଭିତରେ 'ଜେଜେ ଶୁଣ' 'ଜେଜେ ଶୁଣ' ବୋଲି ମଧ୍ୟ ବାରମ୍ବାର କହୁଥିବ । ମୁଁ ତାହା କଥା ଶୁଣେ କି ନ ଶୁଣେ, ମାତ୍ର ଶୁଣିବାର ଢଙ୍ଗ ଦେଖାଏ । ଏମିତି କହୁ କହୁ କେତେବେଳେ ହଠାତ୍ ଉଠି ଚାଲିଯାଏ । ପୁଣି କେତେବେଳେ ମନ ହେଲେ ଆସି ବସେ ଓ ଗପେ । ଏହିପରି ଭାଷଣ ଦେଉଥିବା ଭିତରେ ସେଦିନ ମତେ ପୂର୍ବୋକ୍ତ 'ଜେଜେ ମତେ ଗୋଟିଏ ସାଇକେଲ କିଣି ଦିଅ' କଥାଟି କହିଥିଲା । ତାହାର ଏକଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇ ନଥିଲି । ସେ ଏକଥା ମତେ କାହିଁକି କହିଲା ତାହା ମଧ୍ୟ ବୁଝିବାକୁ ମତେ ଡେରି ଲାଗି ନଥିଲା । କହିବାର କାରଣ ହେଲା, ଆଗରୁ ତାହାର ଉପରେ ଭାଇ ଭଉଣୀଙ୍କୁ ଦୁଇ ଚାରିମାସ ବ୍ୟବଧାନରେ ମୁଁ ଦୁଇଟି ସାଇକେଲ୍ କିଣି ଦେଇଥିଲି ।

ସେମାନଙ୍କ ପାଇଁ ସାଇକେଲ୍ କିଣା ହେଲା ବେଳେ ସେ ସାଇକେଲ ଚଳାଇବାକୁ ଶିଖୁଥିଲା । ଠିକ୍ ଶିଖିଗଲା ପରେ ପରେ ଏ ଦାବୀ ସେ ଆରମ୍ଭ କଲା । ତାହାର ଭାବନା ଯେ ଜେଜେ ଯଦି ଭାଇ ଓ ଦେଇଙ୍କୁ କିଣି ଦେଲେ ତାକୁ କାହିଁକି କିଣି ନ ଦେବେ ! ମୁଁ ମନରେ ଏପରି ଭାବିଲି ଓ ଉତ୍ତରରେ ତାକୁ କହିଲି, ''ଆରେ ବାବା,

ସାଇକେଲ୍ କିଏ ମୁଁ କିଏ ? ଏ କଣ ଚକୋଲେଟ୍ ନା ବାରମଜା ହେଉଛି ? ମୁଁ କୁଆଡୁ ଟଙ୍କା ପାଇବି ସାଇକେଲ କିଣିବା ପାଇଁ ?'' ମୋର ଏ କଥାରେ ସେ ଆଦୌ ବିଚଳିତ ହେଲାନାହିଁ ଏବଂ ଗମ୍ଭୀର ଭାବରେ କହିଲା– ''ତମେ ପେନସନ୍ ପାଉଛ''। ପେନସନ୍ ପାଇବା କଥା ଅବଶ୍ୟ ସତ। ମାତ୍ର କଥାକୁ ଉଡ଼େଇ ଦେବା ଢଙ୍ଗରେ କହିଲି – ''ନାଇଁମ, ଟଙ୍କା ମୋ ଠାରେ କାହିଁ ?'' ଏଥିରେ ତା' ମନରେ କିଛି ପ୍ରତିକ୍ରିୟା ସୃଷ୍ଟି ହେଲାପରି ମତେ ଜଣାଗଲା ନାହିଁ। ସେ ବି ହଠାତ୍ ଉଠି ଗତାନୁଗତିକ ଢଙ୍ଗରେ ପଳାଇଲା।

ଅଭିମନ୍ୟୁ ସାଇକେଲ୍ ଶିଖିଲା ଦିନଠାରୁ ଭାଇଭଉଣୀଙ୍କ ସାଇକେଲ୍ ନିର୍ଦ୍ଧିମ ଚଢୁଛି। ମାତ୍ର ନିଜ ସାଇକେଲ୍ ଚଢ଼ିଲେ ଯେଉଁ ଆନନ୍ଦ ଓ ମର୍ଯ୍ୟାଦା, ଏଥିରେ ତାହା କୁଆଡୁ ଆସିବ ?

ପୁଣି ସେମାନଙ୍କ ସାଇକେଲ ବ୍ୟବହାର କରିବାରେ ଅନେକ ସମୟରେ ତାକୁ ବଡ଼ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଛି। ଦିନେ ସେ ଦେଈ ସାଇକେଲ ଚଢ଼ି ଘର ଆଗ ପଡ଼ିଆରେ ଚକ୍କର ମାରୁଥିଲା ବେଳେ ଦେଈ ଦେଖି ପକାଇଲା। ସେ ଖୁବ୍ ଚଢ଼ାଗଳାରେ ତାଗିଦ୍ କରି କହିଲା ''ହେ ଟୋକା, ସାଇକେଲ ଥୋଇ ଦେ, କହୁଛି'' ଏଥିରେ ଅଭିମନ୍ୟୁ ଦବିଗଲା ନାହିଁ କି ସାଇକେଲ ଚଢ଼ା ବନ୍ଦ କଲାନାହିଁ। ଏମିତି ତ ଅନେକ ସମୟରେ ଘଟୁଛି। ନିଜର ସାଇକେଲଟିଏ ନଥିବାରୁ ସିନା ଏ ସମସ୍ୟା। ତଥାପି ସେ ହତାଶ ହୋଇନାହିଁ। କେବେ ମନ ଦୁଃଖ ବି ସେଥିପାଇଁ କରିନାହିଁ। ଉତ୍ସାହ ଉଦ୍ଦୀପନା ଭିତରେ ସେ ତାହାର ଚେଷ୍ଟା ଅବ୍ୟାହତ ରଖିଛି।

ଚେଷ୍ଟା ଆଉ କଅଣ କି ? ବୋଉ ସାଙ୍ଗରେ ଜିଗର ଲଗାଏ। ଆଉ ମୋ ପାଖରେ ବେଳେବେଳେ ଭାଷଣ ମଝିରେ କଥା ଉତ୍‌ଥାପନ କରେ। ଥରେ ମତେ କହିଲା, ''ଜେଜେ ତମେ ଭାଇକୁ ଦେଈକୁ ସାଇକଲ କିଣିଦେଲ। ମତେ କାହିଁକି ଦେବନି ?'' ମୁଁ କହିଲି, ''ଭାଇ ଦେଈ ଷଷ୍ଠ ଅଷ୍ଟମ ଶ୍ରେଣୀରେ ପଢୁଥିଲେ। ବଡ଼ ହୋଇ ଯାଇଥିଲେ। ତୁ ମୋଟେ ଚତୁର୍ଥ ପାର ହେଇନୁ। ତୋର ଅନ୍ତତଃ ଷଷ୍ଠ ଶ୍ରେଣୀ ହେଉ।'' ଅଭିମନ୍ୟୁ କହିଲା, ''ତମେ ଭାଇକୁ କହିଲ କି ତୋର ଅଷ୍ଟମ ଶ୍ରେଣୀ ହେଲେ କିଣିଦେବା ? ମତେ କାହିଁକି କହୁଛ ତୋର ଷଷ୍ଠ ଶ୍ରେଣୀ ହେଉ ? ଯୁଗ ଆଗକୁ ଯିବ ନା ପଛକୁ ? ସେତେବେଳେ ଷଷ୍ଠ ଶ୍ରେଣୀରେ କିଣା ହୋଇଥିଲା। ମୋ ବେଳକୁ ଚତୁର୍ଥରେ କିଣା ହେବା କଥା।'' ମୁଁ କହିଲି, ''ତେବେ ତୋ କଥା ଅନୁସାରେ ତୋ ପରେ ଦ୍ୱିତୀୟ ଏବଂ ତାହା ପରେ ପିଲା ଜନ୍ମ ମାତ୍ରକେ ସାଇକେଲ ଚଢ଼ିବ।'' ମୁଁ ଯେମିତି ଏକଥା କହିଛି ସେ ଚଟକରି ଉଠି ପଳାଇଲା। ସେ ଏପରି ଯାଏ। ତା' ମନକୁ ପାଇଲା ନ ପାଇଲାର କିଛି ସମ୍ବନ୍ଧ ନାହିଁ। ମୋର ୟାଡୁ ସାଡୁ ଦି'ପଦ କହି ବିଷୟଟିକୁ ଏଡ଼ାଇ ଯିବା କଥା। ପୁଣି କିଛିଦିନ ପରେ ମୋତେ କହିଲା, ''ଜେଜେ, ବୋଉ ପାଖରେ ଜମା ଟଙ୍କା ରହୁନାହିଁ। ସବୁ ଘର ଖର୍ଚ୍ଚ ହୋଇଯାଉଛି। ତମେ ସାଇକେଲ କିଣିବା ପାଇଁ ଟଙ୍କା ଦିଅ।'' ମତେ ଗୋଟାଏ ଭଲ ବାଟ ଦିଶିଗଲା। ମୁଁ କହିଲି, ''ମୋର ବହି ବିକ୍ରି କରିବା ପାଇଁ କାଶୀବାବୁ ନେଇଥିଲେ। ଅନେକ ଦିନ ହେଲା ତାଙ୍କର ଦେଖାନାହିଁ। ବିକିଲେ କି କ'ଣ କଲେ ଜଣାପଡୁନାହିଁ। ତୁ ବାପାକୁ କହି, ତାଙ୍କୁ ଟିକେ ଖବର ଦେ। ସେ ଟଙ୍କା ଦେଲେ ମୁଁ ତତେ ସାଇକେଲ ପାଇଁ ଟଙ୍କା ଦେଇଦେବି।'' ଯୋଗକୁ ମାତ୍ର ପ୍ରାୟ ପନ୍ଦର ଦିନ ଭିତରେ କାଶୀବାବୁ ବହିର ସମୁଦାୟ ଟଙ୍କା ଆଣି ଦେଇଗଲେ। ପୂର୍ବ ଚୁକ୍ତି ଅନୁସାରେ ମୁଁ ଅଭିମନ୍ୟୁର ବୋଉକୁ ସାଇକେଲ କିଣିବା ପାଇଁ ପୂରା ଟଙ୍କା ଦେଇଦେଲି। ଅଭିମନ୍ୟୁ ଏ ଖବର ପାଇ ବହୁତ ଖୁସି ହୋଇଗଲା। ସେ ଭାବିଲା ସାଇକେଲ ଏଥର ତାର ହସ୍ତଗତ ହୋଇଗଲା ଜାଣ। ମୋ ଉପରେ ବି ଭାରି ଖୁସି ହୋଇଗଲା। ଅଳ୍ପ କିଛିଦିନ ଅଭିମନ୍ୟୁ ସାଇକେଲ କଥା ଆଉ ମୋ ପାଖରେ ଉତ୍‌ଥାପନ କରିନାହିଁ। ମୁଁ ମୋ ତରଫରୁ ଦିନେ ପଚାରିଲି, ''ସାଇକେଲ କିଣା କଥା କଣ

ହେଲା ?'' ତା'ବୋଉ କହିଲା, ''ତାକୁ ସାଇକେଲଟିଏ ଧରାଇଦେବା ମୋର ଇଚ୍ଛା ନୁହେଁ। ଚଗଲା ପିଲା। ସାଇକେଲ ପାଇଲେ କେତେବେଳେ କୁଆଡ଼େ ମାଡ଼ିଯିବ ତାହାର ଠିକଣା ରହିବ ନାହିଁ। ତାକୁ ସାଇକେଲଟିଏ ଦେବା ମାନେ ମନସ୍ତାପକୁ ଆଦରି ନେବା କଥା। ''

'' ସତେ କଣ ଟଙ୍କା ଅଭାବରୁ ସାଇକେଲ କିଣା ହୋଇ ପାରୁନାହିଁ। ଅବଶ୍ୟ ପାଖରେ ଟଙ୍କା ମହଜୁଦ ନଥାଏ। ମାତ୍ର ଇଚ୍ଛା କଲେ ସାଇକେଲଟିଏ କିଣିବା ପାଇଁ ଟଙ୍କାର ବ୍ୟବସ୍ଥା କଣ କରି ହେବନାହିଁ ?'' ଏଥିରୁ ମୁଁ ଜାଣିଲି, ଅଭିମନ୍ୟୁ ଯେ ଟଙ୍କା ଅଭାବ କଥା କହୁଛି, ସେଟା ପୂରା ତା' ନିଜସ୍ୱ। ତା' ବୋଉର ସେଥିରେ କିଛି ସମ୍ପର୍କ ନାହିଁ। ତେବେ ଯାହାହେଉ, ମୁଁ ତ ଆଗରୁ ଦି'ଜଣଙ୍କୁ ଦେଇଛି, ୟାକୁ ନ ଦେବା ବି ଏକ ପ୍ରକାର ଅନ୍ୟାୟ। ତାହା ପରେ ଅପ୍ରତ୍ୟାଶିତ ଭାବେ ପଇସା ବି ହାତକୁ ଆସିଗଲା। ତେଣୁ ମୁଁ ଟଙ୍କାଟି ଦେଇ ମୋ ଦାୟିତ୍ୱ ଶେଷ କରିଦେଲି। ମାତ୍ର ଅଭିମନ୍ୟୁର ଅବସ୍ଥା ଯେଉଁଠି ସେଇଠି।

ତା' ବୋଉ ତାକୁ ବାରକଥା କହି ଭୁଲାଇବାକୁ ଲାଗିଲା। ତଥାପି ଦିନେ ବହୁତ ଜିଗର କରିବାରୁ ତା ବୋଉ ଚିଡ଼ିଯାଇ ମନକଥା କହି ପକାଇଲା, ''ତତେ କିଏ ସାଇକେଲ ଦବ ମ ?'' ଏଥିରେ ଅଭିମନ୍ୟୁ ଅତିମାତ୍ରାରେ କ୍ଷୁବ୍ଧ ହୋଇ କହିଲା, ''ମୁଁ ଆଉ ବୁହାହୋଇ ସ୍କୁଲକୁ ଯିବି ନାହିଁ। ମୋ ପରି କେତେ ପିଲା ସ୍କୁଲକୁ ସାଇକେଲରେ ଆସୁଛନ୍ତି। ଦେଖିପାରୁ ନାହିଁ କି ଜାଣି ପାରୁନାହିଁ, ଖାଲି ଏଇ ଏକା ମାଆ ହୋଇଛି। ଯେଉଁ ପିଲା ସାଇକେଲରେ ଆସୁଛି ତାର ଆଉ ମାଆ ନାହିଁ ?'' ତାହାର ଏ ବୀରୋଚିତ ଭାଷଣ ତା' ବୋଉକୁ ଦବାଇ ଦେଲାନାହିଁ। ସେ ଅଭିମନ୍ୟୁକୁ ମନ ଭୁଲାଇବା ପାଇଁ ୟାଦୁ ସାଦୁ ବାହାନା ଦେଖାଇ ବୁଝାଇବାକୁ ଚେଷ୍ଟାକଲା। ଏ ପ୍ରକାର ଆଶ୍ୱାସନା ଶୁଣି କ୍ରମଶଃ ଅଭିମନ୍ୟୁର ଧୈର୍ଯ୍ୟଚ୍ୟୁତି ଘଟିଲା ଏବଂ ବୋଉ ପ୍ରତି ଟିକିଏ ଅବିଶ୍ୱାସ ବି ଆସିଲା। ସେଠୁ ସେ ମୋ ସାଙ୍ଗରେ ରୀତିମତ ଝଗଡ଼ା ଆରମ୍ଭ କଲା। ମୋତେ କହିଲା, ''ତମେ ବୋଉକୁ କାହିଁକି ଏ ଟଙ୍କା ଦେଲ ? ତମେ ତାହାଠୁ ଟଙ୍କା ନେଇଆସ ଏବଂ ତମେ ସାଇକେଲ କିଣିଦିଅ।''

ମୁଁ କହିଲି, ''ଟଙ୍କାରେ କିଛି କଥା ନାହିଁ। ସାଇକେଲ କିଣିବା ଦାୟିତ୍ୱ ତୋ ବୋଉର। ସେ ଇଚ୍ଛା ନ କଲେ ମୁଁ କିଏ ସେ ଦାୟିତ୍ୱ ନବାକୁ ?'' ସେ କହିଲା, ''ତୁମେ ଦେଇକୁ ଭାଇକୁ ସାଇକେଲ କିଣିଦେଲା ବେଳେ ବୋଉକୁ ତ ପଚାରି ନଥିଲ, ମୋ ବେଳକୁ କାହିଁକି ବୋଉ କଥା ଉଠାଉଛ ?'' ତାହାର ଏ କଥାରେ ମୁଁ ଦବିଗଲି। ବାସ୍ତବିକ ମୁଁ ତ ତା ବୋଉର ଅନୁମତି ନେଇନଥିଲି। କାହିଁକି ଅନୁମତି ନନେଇ ଏ କାମ କଲି, ଏବେ ମୁଁ ଭାବି ପାରୁନାହିଁ।

ମୁଁ ତାକୁ କହିଲି, ପଛକଥା ଆଲୋଚନା କରି ଲାଭ ନାହିଁ। ତେବେ ତତେ ମୁଁ ଗୋଟିଏ କଥା କହୁଛି। ତୁ ଯଦି କରିପାରିବୁ, ତେବେ ସାଇକେଲ ମୁଁ କିଣିଦେବି। ବୋଉଠୁ ଟଙ୍କା ଆଣିବା ଦରକାର ନାହିଁ। ତୁ ବାପାଙ୍କ ଠାରୁ ତତେ ସାଇକେଲ କିଣି ଦେବାପାଇଁ ମୋ ପାଖକୁ କ୍ଷୁଦ୍ର ଚିଠିଟିଏ ଲେଖାଇ ଆଣେ। ତୁ ଲେଖା ଆଣିଲାମାତ୍ରେ ମୁଁ କିଣିଦେବି। ଘଣ୍ଟାଏ ବି ଡେରି କରିବି ନାହିଁ। କଥାଟିକୁ ମନଯୋଗ ଦେଇ ଶୁଣିଲା। ଉଠି ଚାଲିଗଲା।

ଏ ଘଟଣା ପରେ ଦୁଇମାସ ବିତିଗଲାଣି। କିନ୍ତୁ ସେ ଆଉ ସାଇକେଲ କଥା ଉତ୍‌ଥାପନ କରିନାହିଁ। କଅଣ ହେଲା ତାହାର ? ମୁଁ ଥରେ ମନେ ପକାଇଲା ଢଙ୍ଗରେ ପଚାରିଲି, ''କିରେ ବାପାଙ୍କଠୁ ଲେଖା ଆଣିଲୁ ନାହିଁକି ?'' ସେ ତାହା ଶୁଣି ନ ଶୁଣିଲା ପରି ବ୍ୟବହାର କଲା। ମୁଁ ଥରେ ତା ବୋଉକୁ ପଚାରିଲି, ''ଅଭିମନ୍ୟୁ କାହିଁକି ଆଉ

ସାଇକେଲ ନାଁ ଧରୁନାହିଁ ?'' ସେ କହିଲେ– ''ତା ମୁଣ୍ଡରେ ଠିକଣା କଥା ଢୁକିଗଲା। ମୋ ସାଙ୍ଗରେ ଲାଗିଥିଲା। ପିଲାମାନେ ମା'ପାଖରେ, ଜେଜେ ପାଖରେ, ଜେଜେମା ପାଖରେ ଅଳି ଅଝଟ କରନ୍ତି। ଲୁଗାପଟା, ଖାଇବା ଜିନିଷ, ଖେଳଣା ପ୍ରଭୃତି ଜିନିଷ ସିନା ଏମାନେ ତୁଲାଇ ପାରିବେ। ସାଇକେଲ ଜିନିଷଟା ଅଲଗା କଥା ନୁହେଁ କି ?'' ମୁଁ କହିଲି, ''ତମେ ତ ନିର୍ବିଚାରରେ ଅଳି ଅଝଟ ସବୁ ପୂରଣ କରି ଦିଅ। ସାଇକେଲଟା ଅଲଗା କଥା ବୋଲି ସେ କାହିଁକି ଭାବିବ ?'' ସେ କହିଲେ, ''ସେ କ'ଣ ଭାବିବ ନ ଭାବିବ, ମୋ ପାଇଁ ବଡ଼ କଥା ନୁହେଁ। ନିରାପତ୍ତା ଦୃଷ୍ଟିରୁ ମୁଁ ତାକୁ ସାଇକେଲ ଦେବାକୁ ଚାହୁଁନାହିଁ। ସେ ଯେମିତି ଜିଗର କରୁଛି, କରୁଥାଉ। ମନ ଭାଙ୍ଗିଦେବାକୁ ମତେ ଭଲ ଲାଗେନାହିଁ।''

ଅଭିମନ୍ୟୁର ବୋଉ ଓ ମୋ ଭିତରେ ଏହି ବିଷୟରେ କଥାବାର୍ତ୍ତା ଆଲୋଚନା ଚାଲିଥିବା ବେଳେ ଅଭିମନ୍ୟୁ କୁଆଡୁ ଆସି ପହଞ୍ଚିଗଲା। ସେ ଆମ କଥା କିଛି ଶୁଣିପାରିଛି ବୋଧେ। ଆକ୍ରମଣ କଲାପରି କହିଲା, ''ଜେଜେ, ବୋଉର କରାମତି କିଛି ନାହିଁ। ସାଇକେଲ ଖଣ୍ଡେ ତ ହୋଇ ପାରୁନାହିଁ ତାହାଦ୍ୱାରା।''

ଆମେ ଭୁଲ ଧାରଣାରେ ରହୁଛୁ ଯେ ଆମ ବୋଉ ସବୁ–ଦେଖିଲାବେଳକୁ କିଛି ନୁହେଁ। ତା ବୋଉ କହିଲେ– ''କେତେ କଥା କହୁଛୁ ମ ? ବାପାଙ୍କ ବିନାନୁମତିରେ ମୁଁ କିପରି ସାଇକେଲ ତତେ ଧରାଇଦେବି ? ତୁ ବାପାଙ୍କୁ କହୁନୁ।'' ଅଭିମନ୍ୟୁ କହିଲା, ''ବାପାଙ୍କୁ କହିବା ଆମର ଅଭ୍ୟାସ ନାହିଁ। ସାଇକେଲ ନହେଲା ନାହିଁ। ମୁଁ ବାପାଙ୍କୁ କହିବି ନାହିଁ।''

ମୁଁ କହିଲି, ''ଆଚ୍ଛା ତୁ କାହିଁକି ବାପାଙ୍କୁ କହିବୁ ନାହିଁ ବୋଲି କହୁଛୁ ?'' ସେ କହିଲା, ''ବାପା କହିବେ ସାଇକେଲ ତୋର ଏବେ କଣ ଦରକାର ? ତୁ ତ ଟଗଲା ଅଣହୁସିଆର ପିଲା। ସାଇକେଲ ପାଇଲେ କେଉଁଠି ଆକ୍ସିଡେଣ୍ଟ କରିଦେବୁ। ବୋଉ ସାଙ୍ଗରେ ଲାଗିଥିଲି। ଭାବିଲି ସେ ତ ଘରେ ସବୁ କରୁଛି। ଏଇଟା ନକରି ପାରିବ ବୋଲି କାହିଁକି ଭାବିବି ? ଟଙ୍କା ବି ତମେ ଦେଇଥିଲ। ଏବେ ନୂଆ କଥା ଶୁଣାଇଲାଣି ବାପାଙ୍କ ଅନୁମତି। ଛାଡ଼–ସେ ସାଇକେଲ କଥା ଏଇଠୁ ବନ୍ଦ। ମୁଁ କହିଲି, ''ଦେଖିଲ, ଅଭିମନ୍ୟୁ କେତେ ସଚେତନ ପିଲା। ତାକୁ ଭୁଲାଇ ବାସ୍ତବତାଠାରୁ ଦୂରେଇ ରଖିବା ଠିକ୍ ନୁହେଁ।''

# ।। ଆକସ୍ମିକତାର ଅନ୍ତରାଳେ ।।

ଚାକିରିରୁ ଅବସର ନେବା ତିନିବର୍ଷ ହୋଇଗଲା । ବାପାଙ୍କର ଦେହାନ୍ତ ହେବା ବି ଦୁଇବର୍ଷ ହୋଇଗଲାଣି । ମଝିଆପୁଅ ଗୋଟିଏ ଧନ୍ଦା ଧରିଥିଲେ ବି ସେଥିରେ ପୂର୍ଣ୍ଣ ମନଯୋଗ ଦେଉନାହିଁ । ସ୍ତ୍ରୀ ତ ଅଚଳ ହୋଇ ପଡ଼ିଲା । ତାହାର ସେବା ବହୁତ କଷ୍ଟକର କଥା । ସାନଝିଅ ଆଉ ମଝିଆପୁଅ ଏ ଦିଗରେ ଖୁବ୍ ଭରସା ଦେଉଛନ୍ତି । ସାନପୁଅ ଏଯାବତ୍ ଚାକିରିଟିଏ ଯୋଗାଡ଼ କରିପାରି ନାହିଁ । ସାନଝିଅର ବାହାଘର ମୁଣ୍ଡ ଉପରେ ବୋଝପରି ନଦି ହୋଇଛି । ସ୍ତ୍ରୀ ବଡ଼ପୁଅ ପାଖରେ ରହିବ ବୋଲି କହୁଛି । ଏ ବୋହୂଟି ଉପରେ ସବୁବେଳେ ସେ ଅସନ୍ତୁଷ୍ଟ । ଦେହର ବଳ କମି କମି ଯାଉଛି । ଅର୍ଥବଳ ପେନ୍‌ସନ୍ । ସଂସାର ଝଞ୍ଜାଳ ମୋର କମୁଛି ନା ବଢୁଛି ? ଅର୍ଥ, ଶାରୀରିକ ସାହାଯ୍ୟ ପୁଅମାନଙ୍କଠାରୁ ଠିକ୍ ଠିକ୍ ନମିଳିଲେ ସଂସାର ଚଳାଇବା କଷ୍ଟକର ହେଉଛି । ବାପା ଥରେ କହୁଥିଲେ ପେନ୍‌ସନ୍ ଟଙ୍କାରେ ଦୁଇପ୍ରାଣୀ ଚଳିଯିବ । ମୁଁ କ'ଣ ଦି'ପ୍ରାଣୀ ଅବସ୍ଥାରେ ଅଛି ? ମାତ୍ର ଦି'ବର୍ଷ ତଳେ ମନ କେତେ ହାଲକା ଥିଲା । ବାପାଙ୍କ ଭରସା ବୋଧେ ସବୁ ହାଲ୍‌କା କରିଦେଉଥିଲା । ଏହିପରି ଭାବନାରେ ବୁଡ଼ିରହି ଚାଲୁ ଚାଲୁ ନଈଘାଟରେ ପହଞ୍ଚିଗଲି ।

ବନ୍ଧତଳକୁ ନଦୀ ଅତଡ଼ାରେ ଥିବା ବିରାଟ ବରଗଛ ଛାଇରେ ଜଣେ ବୃଦ୍ଧଙ୍କୁ ବସିଥିବାର ଦେଖିଲି । ନାତିଦୀର୍ଘ, କ୍ଷୀଣ ଶରୀର । ତାଙ୍କର ଚେହେରା ଓ ମୁହଁର ଆକୃତିରେ ମୋର ଆଖି ପଡ଼ିବା ମାତ୍ରକେ ମୋ ଦେହରେ ବଡ଼ ଅଦ୍ଭୁତ ଭାବରେ ଗୋଟିଏ ଶୀହରଣ ସୃଷ୍ଟି ହେଲା । ମୁଁ ହଠାତ୍ ମନେ ମନେ କହିପକାଇଲି ବାପା କ'ଣ ଏଠି ବସିଛନ୍ତି । ମୋର ସ୍ୱର୍ଗତ ପିତାଙ୍କ ଚେହେରା ସହ ତାଙ୍କ ଚେହେରାର ସାଦୃଶ୍ୟ ମୋତେ ଅଭିଭୂତ କଲା । ମନକୁ ସ୍ଥିରକରି ଭାବିଲି, ବାପାଙ୍କ କଥା ଭାବୁଥିବାରୁ ବୋଧେ ଏପରି ଦେଖାଯାଉଛି । ଭଲରୂପେ ନିରୀକ୍ଷଣ କରିବାପାଇଁ ଆକୃଷ୍ଟ ହୋଇ ମୁଁ ତାଙ୍କ ପାଖକୁ ଗଲି । ସେ ମୋତେ ତାଙ୍କ ପାଖରେ ବସିବାକୁ କହିଲା । ମୁଁ ବସିଲି ଏବଂ ତାଙ୍କୁ ମୋର ସଦ୍ୟ ସଂଜାତ ଭାବ ଜଣାଇଲି । ଏଥିରେ ତାଙ୍କର ବିଶେଷ ପ୍ରତିକ୍ରିୟା ସୃଷ୍ଟି ହେଲାନାହିଁ । ହାଲକା କରି କହିଲେ, ‘‘ସେପରି ବେଳେ ବେଳେ ହୁଏ । ଏଠି ଚେହେରାର ସାଦୃଶ୍ୟ ବଡ଼କଥା ନୁହେଁ । କଥା ହେଉଛି–ଏ ଜାଗା ସହିତ ଆପଣଙ୍କ ବାପାଙ୍କୁ ନେଇ କିଛି ଭାବ ଆପଣଙ୍କ ମନରେ ଅଛି । ସେହି ଭାବ ହିଁ ଆପଣଙ୍କୁ ଚମକାଉଛି ।’’ ବୃଦ୍ଧଙ୍କ କଥାରେ ମୁଁ ଚମକି ପଡିଲି ଏବଂ କହିଲି ‘‘ହଁ, ଆପଣଙ୍କ ଅନୁମାନ ସମ୍ପୂର୍ଣ୍ଣ ସତ୍ୟ । ନବେବର୍ଷ ଅତିକ୍ରମ କରୁଥିବା ମୋର ପିତା ଦୁଇବର୍ଷ ତଳେ ଏଇ ନଦୀ ବାଲିରେ ପଡି ପ୍ରାଣତ୍ୟାଗ କଲା ପୂର୍ବରୁ କୁଆଡେ ଏଇ ସ୍ଥାନରେ ବସିଥିଲେ ବୋଲି କେତେକ ଲୋକ କହନ୍ତି । ସେହିଦିନ ଠାରୁ ଏଇ ସ୍ଥାନଟିକୁ

ମୋର ପୂଜ୍ୟ ପିତୃଦେବଙ୍କର ଅନ୍ତିମ ବିଶ୍ରାମର ସ୍ଥାନ ଭାବି ପ୍ରବୃତ୍ତି ପରିଚାଳିତ ହୋଇ ବାରମ୍ବାର ମୁଁ ଏଠାକୁ ଆସିଥାଏ।'' ବୃଦ୍ଧ କହିଲେ, ''ବାପାଙ୍କ ପ୍ରତି ଆପଣଙ୍କର ସ୍ନେହ, ଶ୍ରଦ୍ଧା, ଭକ୍ତି ଏହା ଯେତେ ପ୍ରକଟ ନ କରୁଛି, ବେଶି ପ୍ରକଟ କରୁଚି ଆପଣଙ୍କ ମନର ଅବଶୋଷ। ବୋଧହୁଏ ବାବାଙ୍କ ପ୍ରତି ଆପଣ ସମସ୍ତ ଆନ୍ତରିକତା ସତ୍ତ୍ୱେ କିଛି ଅବହେଳା କରିଛନ୍ତି। ତାଙ୍କର ମୃତ୍ୟୁ ପରେ ସେହି ଅବହେଳାରୁ ଜାତ ଅବଶୋଷ ଆପଣଙ୍କୁ ଭୂତ ଲାଗିଲା ପରି ମଝିରେ ମଝିରେ ଆକ୍ରମଣ କରୁଛି ଏଇଟା ବି ଏକତରଫା ନୁହେଁ। ବାପାଙ୍କର ଆତ୍ମା, ଯାହା ଏବେ ପ୍ରେତ ରୂପେ ଥିବ ବୋଲି ଆମର ବିଶ୍ୱାସ, ତାହା ମଧ୍ୟ ଏ ଜାଗାକୁ ବାରମ୍ବାର ଆସୁଥିବ। ତେବେ ଏସବୁ ମନର ବିକାର। ଯାହା ହେବାର ଥାଏ, ହୋଇଯାଏ। ଆପଣ କିଛିଦିନ ଏ ବିକାରର ଶିକାର ହେବେ। ସମୟକ୍ରମେ ତାହା ଛାଡ଼ିଯିବ। ଜୀବନ ଏଇଆ। ଭୁଲିଯିବାର ଗୁଣଟି ମନୁଷ୍ୟର ନଥିଲେ ଜୀବନ ବଡ଼ ଦୁର୍ବହ ହୁଅନ୍ତା। ପୁନର୍ଜନ୍ମ, ପ୍ରେତ ଇତ୍ୟାଦି କଥା ଏଯାବତ୍ ବିଜ୍ଞାନସମ୍ମତ ହୋଇନାହିଁ।

ବୃଦ୍ଧଙ୍କର ଦର୍ଶନତତ୍ତ୍ୱ ଶୁଣି ମୁଁ ବଡ଼ କୃତକୃତ୍ୟ ହେଲି। ମୁଁ ଭାବିଲି, ବାପାଙ୍କ ପ୍ରେତ ବୃଦ୍ଧଙ୍କୁ ଗ୍ରାସ କରିଛି। ନହେଲେ ଏ ଜାଗା ସହିତ ସମ୍ବନ୍ଧ, ମୋ ମନର ଅବଶୋଷ ଇତ୍ୟାଦି ସତକଥା ସେ କିପରି କହୁଛନ୍ତି। ତାଙ୍କ ପ୍ରତି ମନରେ ଗୋଟାଏ ଅହେତୁକ ଭକ୍ତିଭାବ ଜାତ ହେଲା। ମୁଁ ଭାବିଲି, ବାପାଙ୍କର ମୁଁ ବଡ଼ପୁଅ। ମୋତେ ସେ ବହୁତ ଭଲପାଉଥିଲେ। ଶେଷ ବେଳେ କ'ଣ କହିଥାନ୍ତେ। ଜୀବନ ଗଲା ପୂର୍ବରୁ ଏଇ ଜାଗାରେ ବସିଥିଲା ବେଳେ ବୋଧେ ମୋତେ ପାଖରେ ପାଇବାକୁ ଚାହିଁଛନ୍ତି–ତାହା ତ ଘଟିଲା ନାହିଁ। ସେହି ଅପୂର୍ଣ୍ଣ ଆକାଂକ୍ଷା ବୋଧେ ବାପା ଏହି ବୃଦ୍ଧଙ୍କ ମାଧ୍ୟମରେ ଚରିତାର୍ଥ କରନ୍ତି। ଅର୍ଥାତ୍ ତାଙ୍କର ଅମୋକ୍ଷ ଆତ୍ମା ବୃଦ୍ଧଙ୍କ ଦେହରେ ପ୍ରବେଶ କରି ମୋତେ ଏସବୁ କଥା କହୁଛନ୍ତି।

ମୋର କୌତୂହଳ ବଢ଼ିଗଲା ଏବଂ ବୃଦ୍ଧଙ୍କ ଠାରୁ ଅଧିକ କିଛି ଶୁଣିବା ଇଚ୍ଛାରେ କଥାର ସୂତ୍ରପାତ କଲି। ମୁଁ ପଚାରିଲି, ''ଆଜ୍ଞା, ଆପଣ ବୋଧେ ଏଇ ପାଖାପାଖି କେଉଁଠି ରହନ୍ତି।'' ସେ କହିଲେ, 'ହଁ, ଏଇ ତୁଳସୀପୁର ଏରିଆରେ ରହେ।' ମୁଁ ପଚାରିଲି, 'ଆପଣ କ'ଣ କରନ୍ତି–ବୟସ ବୋଧେ ସତୁରି ପାଖାପାଖି ହେବ।'

–ମୁଁ ପୋଲିସ୍ ବିଭାଗରେ କାମ କରୁଥିଲି। ଇନ୍‌ସ୍‌ପେକ୍ଟର ପୋଷ୍ଟରୁ ଅବସର ନେଲି। ଅବସର ନେବା ୧୭ବର୍ଷ ହୋଇଗଲାଣି। ବୟସ ଏବେ ୭୫ ଚାଲୁଛି।

– ତୁଳସୀପୁରେ ଘରଟିଏ କରିଛନ୍ତି ବୋଧେ ?

– ନା, ଗୋଟିଏ ବଖରା ଭଡ଼ା ନେଇ ରହୁଛି।

– ଆପଣଙ୍କର ପରିବାର–ପିଲାପିଲିଙ୍କ ଅବସ୍ଥା ?

– ମୋର ସ୍ତ୍ରୀ ମରିଯାଇଛନ୍ତି। ଗୋଟିଏ ପୁଅ, ଦୁଇଟି ଝିଅ।

– ଗୋଟିଏ ବଖରାରେ କିପରି ରହୁଛନ୍ତି ?

– ନାଁ, ନାଁ, ସେମାନେ ଅନ୍ୟତ୍ର ରହନ୍ତି। ପୁଅ ବିବାହ କରିଛି। ତାହାର ଚାରିଟି ପିଲା। ସେ ଏଇ କଟକରେ

ସେଣ୍ଟ୍ରାଲ ଗଭର୍ଣ୍ଣମେଣ୍ଟ ଚାକିରିଟିଏ କରେ। ସେ ତାହାର ଛୁଆପିଲାଙ୍କୁ ନେଇ ରହୁଛି। ବଡ଼ଝିଅ ଭୁବନେଶ୍ୱରରେ ଚାକିରି କରେ। ସାନଝିଅ ତାହା ପାଖରେ ରହେ।

– ଆପଣ ପୁଅ ପାଖରେ ନରହି ଅଲଗା ରହୁଛନ୍ତି କାହିଁକି ?

– ପୁଅ ଘରେ ଗହଳି ଭିତରେ ରହିଲେ ମୋତେ କଅଣ ମିଳିବ ?

– ବହୁତ ମିଳିବ। ସେବା, ନିରାପତ୍ତା, ଭରସା–ଯାହା ବୃଦ୍ଧାବସ୍ଥାରେ ଅତି ଆବଶ୍ୟକ।

– ସେଗୁଡ଼ାକରେ ମୁଁ ବିଶ୍ୱାସ କରେ ନାହିଁ। ସଂସାର ବାହାରକୁ ଯାହା ଦିଶେ, ଭିତରେ ତାହା ନୁହେଁ। ଭିତରର ଅବସ୍ଥା ଅନୁଧ୍ୟାନ ନକରି ଉପରେ ଭାସୁଥିବା ଲୋକମାନେ ଏହିପରି କଥା କହନ୍ତି। ଶୈଶବ କଥା ଛାଡ଼, ବୃଦ୍ଧ ହୁଅ କି ଯୁବା ହୁଅ–ଯାହା କରିବ ନିଜେ ହିଁ କରିବ। କାହାପାଇଁ କେହି କିଛି କରିଦେବେ ନାହିଁ। ଆମର ପରା କଥା ଅଛି–ନିଜେ ନମଲେ ସ୍ୱର୍ଗ ଦେଖି ହେବ ନାହିଁ। ଅର୍ଥାତ୍ ସ୍ୱର୍ଗ ଦେଖିବାକୁ ଇଚ୍ଛା ତ ମରିଯାଏ। ତୁମେ ଅକ୍ଷମ ବୋଲି ଅନ୍ୟ କେହି ତୁମକୁ ଦେଖାଇ ଦେବେ ନାହିଁ। ଯେଉଁମାନେ ଅନ୍ୟ ଉପରେ ଭରସା ରଖନ୍ତି, ସେମାନେ କେବଳ ହତାଶାର ସମ୍ମୁଖୀନ ହୁଅନ୍ତି।

– ଆପଣ ବୋଧେ ନିର୍ଜ୍ଜନତାକୁ ଭଲ ପାଆନ୍ତି ?

– ନାଁ, ନାଁ, ନିର୍ଜ୍ଜନତାକୁ କାହିଁକି ଭଲ ପାଇବି ? ଗହଳି ଭିତରେ ଜୀବନ କଟିଲା ପରା। ପିଲାଙ୍କର ଲାଳନପାଳନ, ପାଠପଢ଼ା, ବିବାହ ବ୍ରତ– ଏସବୁ କ'ଣ ଆପେ ଆପେ ହୋଇଗଲା ? ସଂସାରର ଜଞ୍ଜାଳ ଅସୀମ ଯେ।

– ଏତେ ଜଞ୍ଜାଳ, କଷ୍ଟ ସହି କ୍ଳାନ୍ତ ହେଲାବେଳକୁ ସେମାନଙ୍କର ସେବା ଲାଭ କରି ସିନା ଚିନ୍ତାଶୂନ୍ୟ ଜୀବନଯାପନ କରନ୍ତେ। ମାତ୍ର ଆପଣ ଯାହା କରୁଛନ୍ତି, ତାହାଦ୍ୱାରା ଆପଣ ପୂର୍ବ ଜଞ୍ଜାଳର ଧାରାକୁ ଧରି ରଖୁଛନ୍ତି।

– ସେପରି ଅବସ୍ଥାରେ ଲୋକ ପ୍ରକୃତରେ ଚିନ୍ତାଶୂନ୍ୟ ହୁଏନାହିଁ ବରଂ ଚିନ୍ତାଗ୍ରସ୍ତ ହୋଇପଡ଼େ। ପୁଅ ପାଇଁ ବାପା ଯାହା କରେ ତାହା ପଛରେ କୌଣସି ସ୍ୱାର୍ଥ କାମନା ନଥାଏ। ମାୟା–ପ୍ରେରିତ ହୋଇ କର୍ତ୍ତବ୍ୟବୋଧରେ ମନୁଷ୍ୟ ତାହା କରେ। ସେହି କର୍ମର ପ୍ରତିଦାନ ସ୍ୱରୂପ ତୁମେ ଯଦି ପୁଅଠାରୁ ସେବା ଇତ୍ୟାଦି ଆଶା କରିବ, ତାହାହେଲେ ତମେ ଭୁଲ କରିବ।

ସେବା ତ ପାଇବ ନାହିଁ। ମିଳିବ ହା–ହୁତାଶ। ମୋର ମତ, ପୁଅ ପ୍ରତି ତୁମର କର୍ତ୍ତବ୍ୟ ଶେଷ ହୋଇଗଲା ପରେ ସେ ବାହାଚୋରା ହୋଇଗଲା ପରେ ତାହାଠାରୁ ତୁମେ ଅଲଗା 'ହୋଇଯିବା ଉଚିତ। ତାଙ୍କ ସଙ୍ଗରେ ମିଶି ନିଜେ ହନ୍ତସନ୍ତ ହେବା ସଙ୍ଗେ ତାଙ୍କ ସ୍ୱାଧୀନତା ଖର୍ବ କରିବା ଠିକ୍ ନୁହେଁ। ଏକତ୍ର ବାସଦ୍ୱାରା ସ୍ନେହଶ୍ରଦ୍ଧା ବଢ଼େ ନାହିଁ। ବରଂ ପରସ୍ପର ମଧ୍ୟରେ ଅଯଥା ବିରାଗ ମୁଣ୍ଡଟେକେ। ସେମାନେ ବି ତୁମକୁ ତାଙ୍କ ଘରେ ପୂରାଇବାକୁ ଚାହାନ୍ତି ନାହିଁ। ତୁମେ ତାଙ୍କ ରୁଚି ଓ ଇଚ୍ଛା ବିରୋଧରେ ପଶିଲେ ଫଳ ଯାହାହୁଏ– ମୁଁ ଅନେକ ଅନୁଭବୀଙ୍କ ମୁହଁରୁ

ଶୁଣିଛି। ଏଥିରେ ପୁଅକୁ ଦୋଷଦେବା ଅନୁଚିତ୍। ବାସ୍ତବବାଦୀ ହେବା ଦରକାର। କାହାର ଦୋଷଗୁଣ ବିଚାରିବା ଅନାବଶ୍ୟକ। ଏକତ୍ର ବାସର ସ୍ୱାଭାବିକ ପରିଣତିକୁ ଏଡାଇବା ସହଜ ନୁହେଁ।

-ଆପଣ ବୋଧେ ଏପରି କିଛି ଘଟିବାରୁ ଅଲଗା ରହିବାକୁ ପସନ୍ଦ କଲେ।

- ନା, ମୁଁ କାଦୁଅରେ ପଶିନାହିଁ କି ଗୋଡ଼ ଧୋଇ ନାହିଁ। ମୁଁ ଅନ୍ୟମାନଙ୍କ ଠାରୁ ଯାହା ଶୁଣିଥିଲି ତାକୁ ନିଜର ବିଚାର ବୁଦ୍ଧିଦ୍ୱାରା ମାର୍ଜିତ କରି ଏ ପ୍ରକାର ସିଦ୍ଧାନ୍ତରେ ଉପନୀତ ହେଲି ଏବଂ ତାହାରି ବଳରେ ପ୍ରଥମରୁ ମୁଁ ନିଃସଙ୍ଗ ଜୀବନ ଆଦରି ନେଲି। ଆପଣ ପଚାରି ବୁଝନ୍ତୁ, ଯେତେଗୁଡ଼ିଏ ଲୋକ ପୁଅ ବୋହୂ ଆଶ୍ରୟରେ ଅଛନ୍ତି, କେହି ଗୋଟିଏ ବି ଶାନ୍ତିରେ ନଥିବେ। ମାନସିକ ଶାନ୍ତି ହେଉଛି ମନୁଷ୍ୟ ପାଇଁ ବିଶେଷତଃ ବୃଦ୍ଧାବସ୍ଥାରେ ବଡ଼ କଥା।

ତୁମେ ତାଙ୍କ ପାଇଁ କଅଣ କରିଛ, ସେଗୁଡାକ ସେମାନେ ଖିଆଲକୁ ଆଣନ୍ତି ନାହିଁ। ତୁମେ ତାଙ୍କୁ ଅନୁଗ୍ରହ ଦେଖାଇ କିଛି କରିନାହଁ। ତୁମର କାମ ଗୁଡିକ ଚିରାଚରିତ ଗତାନୁଗତିକ ପନ୍ଥାରେ ସ୍ୱତଃସ୍ଫୂର୍ତ୍ତ ଭାବରେ ସମ୍ପାଦିତ ହୋଇଥାଏ। ସଂସାର କ୍ଷେତ୍ରରେ ପ୍ରବେଶ କଲେ ତୁମେ ତାଙ୍କ ସଂସାରର ଅବିଚ୍ଛେଦ୍ୟ ଅଙ୍ଗ ନୁହେଁ ଏ ଭାବ ସ୍ୱତଃ ତାଙ୍କ ମନରେ ରୂପାୟିତ ହୁଏ। ପୁଣି ପରଘରୁ ଯେଉଁ ଝିଅଟିକୁ ତୁମେ ବୋହୂ କରି ଆଣ, ତାହାର ତୁମ ପ୍ରତି କୌଣସି ପ୍ରକାର ଆନୁଗତ୍ୟ, ସ୍ନେହ, ଶ୍ରଦ୍ଧା ନ ରହିବା ସ୍ୱାଭାବିକ। କେବଳ ଶାଳୀନତା ବିଚାରରୁ ସେ ତାହାର ଆଚରଣକୁ ଯାହା ନିୟନ୍ତ୍ରିତ କରେ। ପୁଅର ଘରେ ସେ ହୁଏ କର୍ତ୍ତୀ। କେବେ ତୁମ ପ୍ରତି କୌଣସି ଅବିଚାର, ଭୁଲ, ତ୍ରୁଟି ହେଲେ ବି ସେଥିରେ ସ୍ୱର ମିଳାଇବାକୁ ବାଧ୍ୟ ହୁଏ। ତୁମର ରୁଚି ଚିନ୍ତାଧାରା, ମୂଲ୍ୟବୋଧ, ବିଚାର ସେଠାରେ କୌଣସି ସ୍ଥାନ ପାଏ ନାହିଁ।

ମୁଁ ଏପରି ଘଟଣା ଶୁଣିଛି, ଯେଉଁଠାରେ ନାତିନାତୁଣୀଙ୍କୁ ଆକଟ କଲେ କି କିଛି ଶିକ୍ଷା ଦେଲେ, ତାହା ତାଙ୍କର ରୁଚି ବିରୁଦ୍ଧ ହୁଏ ଏବଂ ତୁମକୁ ଅରୁଚିକର ମନ୍ତବ୍ୟ ସହିବାକୁ ହୁଏ। ତୁମ ସହିତ ତାଙ୍କର ଯୋଗାଯୋଗ ଖୁବ୍ ସୀମିତ ହୋଇଯାଏ। ତୁମେ ଗହଳି ଭିତରେ ଥାଇ ମଧ୍ୟ ନିଃସଙ୍ଗ ହୋଇଯାଅ। ଏସବୁ ସାଙ୍ଗକୁ ଅର୍ଥ ସମସ୍ୟା ଅଛି। ତୁମର ଆବଶ୍ୟକତା ବରାଦ ଇତ୍ୟାଦି ଉପରେ ଅଭାବ ନାଁରେ କୁଠାରଘାତ କରାଯାଏ। ମୋର ଚକ୍ଷୁପରିଚୟ ଥିବା ଜଣେ ଭଦ୍ରଲୋକଙ୍କ କାହାଣୀ କହୁଛି ଶୁଣନ୍ତୁ। ସେ ଉଚ୍ଚ ପଦବୀରୁ ଅବସର ନେଲେ। ପୁଅମାନେ ଉଚ୍ଚପଦବୀରେ ଅଧିଷ୍ଠିତ। ମାତ୍ର ସେ ଅବସର ପରେ ଚାକିରି କରୁଛନ୍ତି। ମୁଁ ଥରେ ପଚାରି ଦେଲି, ଆପଣଙ୍କର ଚାକିରି କରିବା କ'ଣ ଦରକାର ? ଏ ପ୍ରଶ୍ନର ଉତ୍ତରରେ ସେ ମୋତେ ବହୁତ କଥା କହିଲେ। କହିଲାବେଳେ ତାଙ୍କ ଆଖି ଛଳଛଳ ହୋଇଗଲା। ତାଙ୍କ କଥାର ସାରବତ୍ତା ଥିଲା-ପେନ୍‌ସନ୍ ତାଙ୍କ ଖର୍ଚ୍ଚ ପାଇଁ ଅକୁଳାନ ହେଉଛି। ସେ କାହାକୁ ମାଗିବେ, କିଏ ଦେବ। ଏସବୁ ପରିସ୍ଥିତିକୁ ବିଚାର କଲେ, ଏକତ୍ର ରହିଲେ ବା ତାଙ୍କ ଉପରେ ନିର୍ଭରଶୀଳ ହେଲେ ଜଣେ ଚିନ୍ତାଶୂନ୍ୟ ହେବ ନା ଚିନ୍ତାଗ୍ରସ୍ତ ହେବ, ଆପଣ କୁହନ୍ତୁ।

- ବୃଦ୍ଧ ହୋଇଗଲେ ଲୋକର ସେବା, ନିରାପତ୍ତା, ଭରସା ଇତ୍ୟାଦି ଦରକାର। ଆପଣାର ଲୋକ ସିନା ସେସବୁ କରିବେ। ସେହି ବିଚାରରୁ ନିଜ ସ୍ୱାର୍ଥ ପାଇଁ ତାଙ୍କ ବ୍ୟାପାରରେ ଜଡ଼ିତ ନହୋଇ ଅତିଥି ପରି ଦିନ କାଟିଦେଲେ କ୍ଷତି କ'ଣ ?

- ଅତିଥି ସେବା କ'ଣ ଆମ ସମାଜରେ ଆଉ ଅଛି! ଆମର ଶାସ୍ତ୍ର ନୀତି ଅନୁସାରେ ଅତିଥି ସେବା ହେଉଛି ଗୃହସ୍ଥର ସର୍ବୋତ୍ତମ କର୍ମ। ଅତିଥି କାହାକୁ କହନ୍ତି ? ଯେ ପୂର୍ବରୁ ସୂଚନା ନଦେଇ ତୁମ ସହିତ କୌଣସି ପ୍ରକାର ସମ୍ପର୍କ ନଥାଇ, ଦିନ, ବାର, ବେଳା ନିର୍ବିଶେଷରେ ତୁମର ଦ୍ୱାରସ୍ଥ ହୁଏ, ତାଙ୍କୁ ଅତିଥି କୁହାଯାଏ। ନିଜେ ନଖାଇ ତାଙ୍କୁ ଖୋଇବା ଓ ସେବା କରିବା ଗୃହସ୍ଥର କର୍ତ୍ତବ୍ୟ। ଆଜିକାଲି ଏ ପ୍ରଥା ଚଳୁଛି କି ? ଯେଉଁ ସମାଜରେ ଆତ୍ମୀୟ ଲୋକଙ୍କ ବି ଘରେ ପ୍ରବେଶ ପାଇଁ ଅନୁମତି ନାହିଁ, ସେଠାରେ ଅତିଥି ସେବା କଳ୍ପନା ବିଡ଼ମ୍ବନା ମାତ୍ର। ଯୌଥ ପରିବାର ଭାଙ୍ଗିଗଲା। ଛୋଟ ପରିବାର, ସୁଖୀ ପରିବାର, ସ୍ଲୋଗାନ ସର୍ବତ୍ର ନିନାଦିତ। ପରିବାର ଅର୍ଥ ସ୍ୱାମୀ, ସ୍ତ୍ରୀ, ଓ ସନ୍ତାନ। ବନ୍ଧୁବାନ୍ଧବ ଭିତରେ ଶ୍ୱଶୁର ଘର ଲୋକ। ବାପ, ମାଆ, ଭାଇ ଭଉଣୀଙ୍କର ପରିବାରରେ ସ୍ଥାନ ନାହିଁ। ଏଇଟା ହେଲା ଯୁଗଧର୍ମ। ପବନ ଯେଉଁ ଦିଗରୁ ବହୁଛି, ସେହି ଦିଗକୁ ସିନା ଛତା ଦେଖାଇବ। ସ୍ରୋତର ପ୍ରତିକୂଳରେ ଗଲେ କି ଅଗ୍ରଗତି କରିବ ? ତୁମେ କଥା କହି, ଅଭିମାନ କରି, ରାଗରୋଷ କରି କିଛି ପରିବର୍ତ୍ତନ କରିପାରିବ ନାହିଁ। ଘରର ସମସ୍ୟାରେ ତୁମର ଜଡ଼ିତ ହେବାର ଆବଶ୍ୟକତା ନାହିଁ। ସେମାନେ ବି ତୁମକୁ ଜଡ଼ିତ କରିବେ ନାହିଁ।

ମାତ୍ର ତୁମକୁ କେହି ପଚାରୁ ନାହାନ୍ତି, ତୁମେ ଅଲୋଡ଼ା ଅଦରକାରୀ-ଏପ୍ରକାର ଭାବନାରୁ ତୁମେ ନିଜକୁ ମୁକ୍ତ କରିପାରିବ ନାହିଁ। ଏପରି ଭାବନା ମୁଣ୍ଡରେ ଢୁକିଲେ ତୁମେ ଅଯଥା ହୀନମନ୍ୟତାର ଶୀକାର ହୋଇ ଅଶାନ୍ତ ହେବ। ପୁଣି ଆମର ଆଶ୍ରମ ବ୍ୟବସ୍ଥାରେ ଗାର୍ହସ୍ଥ୍ୟ ପରେ ବାନପ୍ରସ୍ଥର ବ୍ୟବସ୍ଥା ଥିଲା। ବଣରେ ନହେଲେ ମଧ୍ୟ ଅଲଗା ରହିବା ସେହି ହିସାବରେ ଯୁକ୍ତିଯୁକ୍ତ। ତାହାଦ୍ୱାରା ତୁମେ ଦୁଶ୍ଚିନ୍ତା ଦୁର୍ଭାବନାରୁ ମୁକ୍ତ ରହିବା ସଙ୍ଗେ ବାକ୍ ସଂଯମ ଖାଦ୍ୟ ସଂଯମଦ୍ୱାରା ଅଧିକ ନିରାମୟ ଜୀବନ କଟାଇ ପାରିବ।

- ଏବେ ସିନା ହାତ ଗୋଡ଼ ଚଳୁଛି - ଚଳିଯାଉଛନ୍ତି। ରୋଗ ବା ଅନ୍ୟ କୌଣସି କାରଣରୁ ଆପଣ ଅଚଳ ହେଲେ କଅଣ କରିବେ ? ସେତେବେଳେ ତ ପୁଣି ପୁଅ ପାଖକୁ ଯିବେ ?

- ଭବିଷ୍ୟତ୍ କଥା ଚିନ୍ତା କରିବାକୁ ମୁଁ କିଏ ? ପରମୁହୂର୍ତ୍ତ ବି ଭବିଷ୍ୟତ। ପରମୁହୂର୍ତ୍ତରେ ମୋର ମୃତ୍ୟୁ ହେବ ନାହିଁ ବୋଲି କିଏ କହିବ ? ଭବିଷ୍ୟତ୍ ମନୁଷ୍ୟ ଜ୍ଞାନର ଅତୀତ। ଯାହା ହବାର ଥିବ ହେବ। ଆମେ ଭାବିଚିନ୍ତି ବ୍ୟବସ୍ଥା କରି କିଛି ଏପାଖ ସେପାଖ କରିପାରିବା ନାହିଁ। ସୁନେଲି ଭବିଷ୍ୟତ୍ କଳ୍ପନାରେ ମଶଗୁଲ ହେବା ଯେତିକି ବୋକାମି, ଭବିଷ୍ୟତ୍ ବିପଦ କଳ୍ପନାରେ ଅଧୀର ହେବା ବା ସେଥିପାଇଁ ବ୍ୟବସ୍ଥା କରିବା ତାହାଠାରୁ କିଛି କମ୍ ବୋକାମିର ପରିଚୟ ଦିଏନା। ମତେ ଯଦି ଅଚଳ ହୋଇ ପୁଅପାଖକୁ ଯିବାର ଯୋଗଥାଏ, ମୁଁ କିଏସେ ତାକୁ ରୋକିବାକୁ। ମୋତେ ଯଦି ଯୋଗଥାଏ, ମୁମୂର୍ଷୁ ହୋଇ ପଡ଼ିଥିଲେ ମଧ୍ୟ ପୁଅ ଅନାଇବ ନାହିଁ, ତେବେ ମୁଁ କ'ଣ କରିପାରିବି ? ଭବିଷ୍ୟତ ବିଷୟରେ ମନୁଷ୍ୟର କଳ୍ପନାଜଳ୍ପନା ବୃଥା। ମୁଁ ଉଭୟ ପକ୍ଷର ହିତ ଦୃଷ୍ଟିରୁ ହାତଗୋଡ଼ ଚଳୁଛି ବୋଲି ବାନପ୍ରସ୍ଥୀ ଜୀବନଯାପନ କରୁଛି। ପରେ କ'ଣ ହେବ ମୁଁ ଭାବୁନାହିଁ।

ବୃଦ୍ଧଙ୍କ କଥା ସରିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା। ରାସ୍ତାରେ ବିଜୁଳି ଆଲୁଅ ଜଳି ଉଠିଲାଣି। ମୋର ବୃଦ୍ଧଙ୍କୁ ଆଉ କିଛି କହିବାର ନଥିଲା। ଯିବାପାଇଁ ବୃଦ୍ଧଙ୍କର ଅନୁମତି ମାଗିଲି। ସେ ତାଙ୍କ ବାଟରେ ଯିବାପାଇଁ ଉଦ୍ୟତ ହେଲେ। ମୁଁ ତାଙ୍କୁ ପ୍ରଣାମ କରି ମୋ ବାଟରେ ଚାଲିଲି। ବାଟରେ ଭାବିବାକୁ ଲାଗିଲି, ବୃଦ୍ଧ ଯାହା

କହିଲେ ମୋ ବାପାଙ୍କ ଜୀବନ ଠିକ୍ ସେହି ଭାବରେ ପରିଚାଳିତ ହେଉଥିଲା । ସେ ୯୦ ବର୍ଷ ବଞ୍ଚିଲେ । ଜୀବନକାଳ ଭିତରେ ସେ କାହା ଉପରେ ନିର୍ଭର କରିନାହାନ୍ତି । ନିଜେ ପରିଶ୍ରମ କରି ନିଜ ରୋଜଗାରରେ ଆମକୁ ମଣିଷ କରିଥିଲେ । ବୃଦ୍ଧଙ୍କ ପରି ସେ ଆମଠାରୁ ଅଲଗା ହୋଇ ଦୂରେଇ ଯାଇ ନଥିଲେ ମଧ୍ୟ ଆମ ଭିତରେ ଥାଇ ନିଃସଙ୍ଗ ଜୀବନଯାପନ କରୁଥିଲେ । କେବେ ବେମାର ପଡ଼ିନାହାନ୍ତି କି କାହାର ସେବା ଗ୍ରହଣ କରିନାହାନ୍ତି । ଶେଷ ପର୍ଯ୍ୟନ୍ତ କର୍ମଠ ରହି ବାଟରେ ଚାଲୁ ଚାଲୁ ପ୍ରାଣତ୍ୟାଗ କଲେ । ତାଙ୍କ ଜୀବନଚର୍ଯ୍ୟାରୁ ମୁଁ ଅବଶ୍ୟ ପ୍ରେରଣା ଗ୍ରହଣ କରୁଛି । ମାତ୍ର ସେ କେବେ ମୋତେ ଏ ବିଷୟରେ କିଛି ଶିକ୍ଷା ଦେବା ଭଙ୍ଗୀରେ କହି ନଥିଲେ । ମୃତ୍ୟୁ ଶଯ୍ୟାରେ ଲୋକ ଏ ପ୍ରକାର କେତେ କଥା ପ୍ରିୟ ଲୋକମାନଙ୍କୁ କହିଥାଆନ୍ତି । ବାପାଙ୍କର ସେ ସୁଯୋଗ ନଥିଲା । ତେଣୁ ସେ ଆଜି ଏହି ବୃଦ୍ଧଙ୍କ ମାଧ୍ୟମରେ ମୋତେ ଏ ଶିକ୍ଷା ଦେଲେ । ବୃଦ୍ଧଙ୍କ ଚେହେରା ବାପାଙ୍କର ଚେହେରାର ଖାଲି ସାମଞ୍ଜସ୍ୟ ନଥିଲା, ତାଙ୍କ ରୀତିନୀତି ମଧ୍ୟ ଏକା ପ୍ରକାର ବୋଲି ମୋର ଧାରଣା ହେଲା । ପୁଣି ସାମ୍ପ୍ରତିକ ଅବସ୍ଥାରେ ମୁଁ ଦିଗହରା ପ୍ରାୟ ଭରସା ଖୋଜୁଛି ଏବଂ ବାପାଙ୍କ କଥା ବାରମ୍ବାର ସ୍ମରଣ କରୁ କରୁ ଅଜାଣତରେ ଚାଲିଆସିଲି । ବୃଦ୍ଧ ମଧ୍ୟ ଆଜି କେବଳ ଏ ଜାଗାକୁ ଆସିଥିଲେ । ମୁଁ ବି ଏବେ ବୃଦ୍ଧ । ପିଲାମାନଙ୍କ ଉପରେ ମୋର ନିର୍ଭରତା ବୃଦ୍ଧି ପାଉଛି ଯାହା ବାପା ପସନ୍ଦ କରନ୍ତି ନାହିଁ । ତେଣୁ ବୃଦ୍ଧ ଯାହା କହିଲେ ତାହା ସମୟୋପଯୋଗୀ ଏବଂ ମୋ ପାଇଁ ବହୁତ ଉପାଦେୟ । ଆକସ୍ମିକ ଭାବରେ ଏହା ଘଟିଲା ସିନା, ଏହା ନିଶ୍ଚିତ ଭାବରେ ବାପାଙ୍କର ସେ ପୁରରୁ ପ୍ରେରିତ ମୋ ପ୍ରତି ବାର୍ତ୍ତା ।

## ।। ଅଭିଶାପର ଅନ୍ତରାଳେ ।।

**(ସନାତନ କହିଲା–"କିଏ ନିଜ ସ୍ତ୍ରୀକୁ ସତୀ ବୋଲି ନଭାବେ ବା' ସ୍ତ୍ରୀର ଗୁଣଗାନ ନକରେ ? କିନ୍ତୁ ସେଥିରେ ସତ୍ୟତା କେତେ ତାହା କଣ କିଏ ପରୀକ୍ଷା, ନିରୀକ୍ଷା କରିଛି ? ସମସ୍ତେ ଏମିତି କହି ଚାଲିଛନ୍ତି ନା।")**

କେବଳ ଅପରାହ୍ନ ଚାରିଟା। ଦାଣ୍ଡରେ କିଏ ଡାକିଲା–ମୁଁ ବାହାରକୁ ଆସି ଦେଖିଲି, ସନାତନ ଫାଟକ ପାଖରେ ଠିଆ ହୋଇଛି। ସେ ମୋତେ କହିଲା, "କିହୋ, କୁଆଡେ ବନ୍ଧୁବାସ ଚାଲିଗଲ କି ? ପାଞ୍ଚଦିନ ହେଲା ଦେଖାନାହିଁ। ଦେହ ପା ଭଲ ଅଛି ତ ?" ମୁଁ ଉତ୍ତରରେ କହିଲି, "ହଁ ଦେହ ଭଲଅଛି। ଘରକୁ ଆସି ବସିବା।" ସେ ଘର ଭିତରକୁ ଆସି ଗୋଟିଏ ଚଉକିରେ ବସିଲା।

କଥା ଆରମ୍ଭ କରି ମୁଁ କହିଲି, "ମୋତେ ବାହାରକୁ ବୁଲି ଯିବାକୁ ଡର ମାଡୁଛି। ବୁଢ଼ା ହୋଇଗଲିଣି ତ। ଦେହ, ହାତ ଦୁର୍ବଳ ହୋଇଗଲାଣି। ଚାଲିବାକୁ ଯୋର ପାଉନାହିଁ। ଚାଲିଲାବେଳେ ଗୋଡ଼ ବି ଠିକ୍ ଠିକ୍ ପଡୁନାହିଁ। କାଳେ କେଉଁଠି ପଡ଼ିଯିବି।" ସନାତନ ଏଥିରେ କିଛି ଆଶ୍ଚର୍ଯ୍ୟ ହେଲାନାହିଁ ଏବଂ କହିଲା, "ବୁଢ଼ା ମାତ୍ରେ ତ ଅବସ୍ଥା ସେଇୟା। ମତେ କ'ଣ ସେପରି ଲାଗୁନାହିଁ କି ? ତେବେ ଏଥିରେ ଭୟ କରିବାର କ'ଣ ଅଛି ? ବୁଢ଼ା ହେଲା ବୋଲି କ'ଣ ବାହାରକୁ ଯିବାନାହିଁ ? ଆମଠାରୁ ଆହୁରି ବୟସରେ ବଡ଼ ବୁଢ଼ାମାନେ ରାସ୍ତାରେ ଚାଲିକରି ଯାଉଛନ୍ତି, ସାଇକେଲ୍‌ରେ ଯାଉଛନ୍ତି, ହାତରେ ବ୍ୟାଗଭର୍ତ୍ତି ଜିନିଷଧରି ଯାଉଛନ୍ତି। ସେମାନଙ୍କର ତ ଭୟ ହେଉନାହିଁ। ପଡ଼ିଯିବା କଥା ଯାହା କହୁଛ, ସେଇଟା ଟୋକା ବୁଢ଼ା ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମ୍ଭବ। ଚାଲୁ ଚାଲୁ ଝୁଣ୍ଟିକରି ପଡ଼ିଯିବାଟା କିଛି ବଡ଼ କଥା ନୁହେଁ। ଏଇଥିପାଇଁ ତୁମେ ଡରି ବୁଲାବୁଲି ବନ୍ଦକରି ଦେଇଛ ବୋଲି ମୁଁ ବିଶ୍ୱାସ କରୁନାହିଁ। ଏଥିରେ କିଛି ଭିତିରି କଥା ଅଛି।"

ମୁଁ କହିଲି, "ହଁ ଭିତିରି କଥା ଅଛି। ମତେ ତାହା ପ୍ରକାଶ କରିବାକୁ ଡର ମାଡୁଛି, ଲାଜ ବି ମାଡୁଛି।" ସନାତନ କହିଲା, "ଆମ ଭିତରେ ଲାଜ କ'ଣ ? ଆମେ ପରା କେତେ କେତେ ଅନ୍ତରଙ୍ଗ ବିଷୟ କଥାବାର୍ତ୍ତା ହେଉ। କୁହ, ସବୁକଥା ଫିଟାଇ କୁହ।" ମୁଁ କହିଲି, "ମତେ ଗୋଟାଏ ଅଭିଶାପ ଅଛି। ମୁଁ ବାଟରେ ପଡ଼ି ମରିବି। ସେଇଟା ବହୁଦିନ ତଳର କଥା। କୁଆଡେ ମନରୁ ଯାଇଥିଲା ଏବେ ଦୁର୍ବଳ ହେବାରୁ ମନେପଡ଼ି ମତେ ଏପରି ଭୟାଳୁ କରି ଦେଲାଣି ଯେ ବୁଲିଯିବା କଥା ବା ରାସ୍ତାରେ ଚାଲିବା କଥା ଭାବିଲେ ମୋ ଦେହରୁ ଜୀବନ ଅପଣାଛାଏଁ ଛାଡ଼ିଗଲା ପରି ଲାଗୁଛି।

ସନାତନ କହିଲା, ''ତୁମକୁ ଅଭିଶାପ ଅଛି ବୋଲି ତୁମେ କିପରି ଜାଣିଲ ? କାହାଁ ଭାଗ୍ୟରେ କ'ଣ ଅଛି, ତାହା କିଏ କହିପାରିବ ? କର, କପାଳ, କୋଷ୍ଠୀ ଦେଖି ଗଣକମାନେ ଯାହା କହନ୍ତି, ସେଗୁଡାକ ମୁଁ ବିଶ୍ୱାସ କରେନାହିଁ। ଭାଗ୍ୟକଥା, ଭବିଷ୍ୟତ କଥା ଯଦି ମଣିଷ ଜାଣିପାରୁ ଥାଆନ୍ତା, ତାହେଲେ ସମାଜ ଭିନ୍ନରକମ ହୋଇଥାନ୍ତା। ମୁଁ ଭାବୁଛି ତମେ କୌଣସି ଭଣ୍ଡ ଗଣକର ପାଲରେ ପଡ଼ିଯାଇଛ। ସେ ପୁଣି ଅଭିଶାପ ଖଣ୍ଡନପାଇଁ ପୂଜାପୂଜି, ଦାନ ଖଇରାତର ବରାଦ କରି ନାହିଁ ତ ? ଶଙ୍କର ବାବୁ, ଜମା ଏ ପାଲରେ ପଡ଼ିବ ନାହିଁଟି।''

ମୁଁ କହିଲି, ''ନାଇଁମ, ତମେ କ'ଣ ମତେ ଜାଣିନା। ମୁଁ ଏ ଗଣକ ଫଣକ କଥାରେ କେବେ ପଶେନାହିଁ। କଥାହେଲା, ମୁଁ ସାମନା ସାମ୍ନି, ମୁହେଁ ମୁହେଁ ଏ ଅଭିଶାପଟି ଲାଭ କରିଛି। ଜଣେ ଲୋକ ଏ ଅଭିଶାପ ମତେ ଦେଇଛି।'' ସନାତନ କହିଲା କୋଉ ଲୋକମ ସିଏ ଏଡେ ଅଭିଶାପ ଦେଲାବାଲା ? ମଣିଷ ଗାଳିରେ କୋଉଠି ମଣିଷ ମଲାଣି ନା ତତଲା ପାଣିରେ କେଉଁଠି ଘର ପୋଡ଼ିଲାଣି ?

ମୁଁ କହିଲି, ''ତୁମ କଥା ଅବଶ୍ୟ ଠିକ୍। ମାତ୍ର ମୁଁ ଏମିତିସେମିତି ଲୋକଠାରୁ ଅଭିଶାପ ପାଇନାହିଁ। ଖୋଦ୍ ମୋ ସ୍ତ୍ରୀ ମତେ ଏ ଅଭିଶାପ ଦେଇଛି।''

ଏଥିରେ ସନାତନ ହୋ, ହୋ, ହୋଇ ଖୁବ୍ ବହେ ହସିଲା।

ମୁଁ କହିଲି, ''ଅଭିଶାପ ଦେଇଛି ବୋଲି ମୁଁ ସ୍ତ୍ରୀ ଉପରେ ରାଗ, ଅଭିମାନ କରୁନାହିଁ। ମୋ ବ୍ୟବହାରରେ ଉତ୍‌କ୍ଷିପ୍ତ ହୋଇ ସେ କହି ଦେଇଛି। କିନ୍ତୁ ସେ ସତୀ ହୋଇଥିବାରୁ ତାହା ଅଭିଶାପ ରୂପେ ନିଶ୍ଚେ ଫଳିବ। ମୁଁ ଖାମଖିଆଲି ହୋଇ ତାକୁ ସତୀବୋଲି କହୁନାହିଁ। ଏହା ମୋର ଅନ୍ତରର ଭାଷା। ତାହାର ଆତ୍ମା ପବିତ୍ର। କର୍ତ୍ତବ୍ୟ କରିବା, ସ୍ୱାମୀ ଛୁଆପିଲାଙ୍କ ସେବା କରିବା ଛଡ଼ା ସେ ଅନ୍ୟ କୁଆଡ଼େ ମନ ଦିଏନାହିଁ।

ସନାତନ କହିଲା, ''କିଏ ନିଜ ସ୍ତ୍ରୀକୁ ସତୀବୋଲି ନଭାବେ ବା' ସ୍ତ୍ରୀର ଗୁଣଗାନ ନକରେ ? କିନ୍ତୁ ସେଥିରେ ସତ୍ୟତା କେତେ ତାହା କ'ଣ କିଏ ପରୀକ୍ଷା ନିରୀକ୍ଷା କରୁଛି ? ସମସ୍ତେ ଏମିତି କହି ଚାଲିଛନ୍ତି ନା।''

ମୁଁ କହିଲି,. ''ମୁଁ ଜାଣିଥିଲି ପରା ତୁମେ ସେମିତି କହିବ ଧୂଆମୂଳା ଅଧୁଆ ମୂଳା ସବୁ ସମାନ। ମୁଁ ସେଇଥିପାଇଁ ଏ କଥାଟା ପ୍ରକାଶ କରିବାକୁ ଇଚ୍ଛା କରୁ ନଥିଲି। ମୁଁ କେବଳ କହୁଛି, ସେ ସତୀ। ସୁନାକୁ ସୁନା କହିବା କ'ଣ ଭୁଲ୍। ମୁଁ ତାହାର ପ୍ରକୃତି କଥା କହୁଛି, ତାହାର ଆତ୍ମାର ପବିତ୍ରତା କଥା କହୁଛି। ଉପର ଦେଖାଣିଆ ମନଭୁଲାଣିଆ ଆଚରଣ ତାକୁ ଅମାଲୁମ୍। ତାହାର ବହୁତ ଊର୍ଦ୍ଧ୍ୱରେ ସେ। ତା କଥା ଅବଶ୍ୟ ଫଳିବ। ମୁଁ ରାସ୍ତାରେ ପଡ଼ି ମରିବି।''

ସନାତନ କହିଲା, ''ଅଭିଶାପ କଥାଟା କ'ଣ ଏ ଯୁଗରେ ଫଳୁଛି ? ପୁରାଣ ଯୁଗରେ ମୁନି ଋଷିମାନେ ଅଭିଶାପ ଦେଉଥିଲେ ଏବଂ ତାହା ଫଳୁଥିଲା।''

ମୁଁ କହିଲି, ''ସନାତନ ବାବୁ, ତୁମେ ଏଇଠି ଭୁଲ କରୁଛ। ଅସଲ କଥାଟିକୁ ଛାଡ଼ିଦେଇ ଉପର ବେଶ ପରିପାଟୀ ଦେଖୁଛ। ମୋ ସ୍ତ୍ରୀର ସିନା ମୁନି ଋଷିର ବେଶନାହିଁ। ମାତ୍ର ପବିତ୍ରତା, କର୍ତ୍ତବ୍ୟନିଷ୍ଠା, ଈଶ୍ୱରପରାୟଣତା ଆଦି ଗୁଣର ବିଚାରରେ ସେ ସେମାନଙ୍କଠାରୁ କିଛି କମ୍ ନୁହେଁ। ଅଭିଶାପ ଦାତାଙ୍କର ଶୁଦ୍ଧତା ହିଁ ଅଭିଶାପକୁ

ଶକ୍ତିଶାଳୀ କରେ। ଅଭିଶାପ, ଆଶୀର୍ବାଦ ଏକା କଥା। କ୍ରୋଧରୁ ଅଭିଶାପ, ସନ୍ତୋଷରୁ ଆଶୀର୍ବାଦ। ଆମେ ପୁରାଣରୁ ଜାଣିଛୁ-ଗୌତମଋଷିଙ୍କର ଇନ୍ଦ୍ରଙ୍କୁ ଅଭିଶାପ, ଦୁର୍ବାସାଙ୍କର ଶକୁନ୍ତଳାଙ୍କୁ ଅଭିଶାପ, ନାରଦଙ୍କର ନାରାୟଣଙ୍କୁ ଅଭିଶାପ, ଶ୍ରବଣ କୁମାରର ଅନ୍ଧ ପିତାମାତାଙ୍କର ଦଶରଥଙ୍କୁ ଅଭିଶାପ, ଗାନ୍ଧାରୀଙ୍କର ଦୁର୍ଯ୍ୟୋଧନର ଶରୀରକୁ ବଜ୍ର କରିବା ପାଇଁ ଆଶୀର୍ବାଦ, ମାଆର ନିଜ ଝିଅ ଅଞ୍ଜନାକୁ ଅଭିଶାପ, ଦୁର୍ବାସାଙ୍କର କୁନ୍ତୀଙ୍କୁ ମନୋମତ ଦେବତାଙ୍କ ଠାରୁ ପୁତ୍ର ଲାଭ ପାଇଁ ଆଶୀର୍ବାଦ, ବାଳୀ ସ୍ତ୍ରୀ ତାରାର ରାମଚନ୍ଦ୍ରଙ୍କୁ ଅଭିଶାପ-ସବୁ ଫଳବତୀ ହୋଇଛି ନା ନାହିଁ। ଏବେ ମଧ୍ୟ ଅଭିଶାପ ଆଶୀର୍ବାଦ ଫଳବତୀ ହେଉଛି। ମାତ୍ର ଆମେ ତାକୁ କାକତାଳିକ ନ୍ୟାୟରେ ଏଡ଼େଇ ଦେଉଛୁ। ଅସଲ କଥା ହେଲା, ଦାତାଙ୍କର ସ୍ୱଭାବ ଚରିତ୍ର ବିଚାରକୁ ନେବା ଦରକାର। ଦାତା ଯଦି ପାପାତ୍ମା, ଅସଦ୍‌ଚିନ୍ତାଗ୍ରସ୍ତ, କଳୁଷିତ ମାନସ, ତେବେ ତାହାର ଉଚ୍ଚାରଣରେ ଶକ୍ତି ଆସିବ କୁଆଡୁ ? ଏସବୁ ବିଚାରରୁ ମୋ ସ୍ତ୍ରୀର ମୋ ପ୍ରତି ଯେଉଁ ଅଭିଶାପ, ତାହା ଫଳବତୀ ହେବାରେ ମୋର ସନ୍ଦେହ ନାହିଁ।

ସନାତନ କହିଲା, ''ଶଙ୍କର ବାବୁ, ତୁମ ଅଭିଶାପ ଫଳୁ କି ନଫଳୁ-ତମ ମନରେ ଯେଉଁ ବିଶ୍ୱାସ ଆଉ ଭୟ, ତାହା ପ୍ରଭାବରେ କିଛି ଅଘଟଣ ବି ଘଟିଯିବା ଅସମ୍ଭବ ନୁହେଁ। ତେଣୁ ଅଭିଶାପ ସପକ୍ଷ ବିପକ୍ଷରେ ଅଧିକ କିଛି କହିବାକୁ ମୁଁ ଚାହୁଁନାହିଁ। ତେବେ ଅଭିଶାପ ତତ୍ତ୍ୱର ଗୋଟିଏ ଦିଗ ତୁମେ ସମ୍ପୂର୍ଣ୍ଣ ଭୁଲିଯାଉଛ। ଅଭିଶାପ ଦାତା ଅଭିଶାପକୁ ପ୍ରତ୍ୟାହାର କରି ପାରନ୍ତି ବା ସହଜ ସରଳ କରିପାରନ୍ତି ବା ସେଥିରୁ ରକ୍ଷା ପାଇବା ପାଇଁ ବାଟ ମଧ୍ୟ ବତାଇ ପାରନ୍ତି। ଦୁର୍ବାସା ଶକୁନ୍ତଳାଙ୍କ ଅନୁନୟରେ ପ୍ରୀତ ହୋଇ ନିଦର୍ଶନ ଦେଖାଇଲେ ଦୁଷ୍ମନ୍ତ ଚିହ୍ନିବେ ବୋଲି କହିଥିବା କଥା ତୁମେ ଜାଣିଥିବ। ତୁମେ ଏ ବାଟଟି ପରୀକ୍ଷା କରି ଦେଖ। ତୁମ ସ୍ତ୍ରୀଙ୍କୁ ଥରେ ତାଙ୍କ ଅଭିଶାପଜନିତ ଦୁଃଖ ଜଣାଇ ପ୍ରତିକାର ଲୋଡ଼।'' ଏକଥା ଶୁଣି ମୋ ଆଖି ଆଗରୁ ଜମାଟ ବାନ୍ଧିଥିବା ଅନ୍ଧାର ଘୁଞ୍ଚିଗଲାପରି ଲାଗିଲା। ଭାବିଲି, ପ୍ରକୃତରେ ଦୁର୍ବାସା ତ ଅଭିଶାପ ଦେଇ ପୁଣି ସେଥିରୁ ରକ୍ଷା ପାଇବାର ବାଟ ଶକୁନ୍ତଳାଙ୍କୁ ବତାଇଥିଲେ। ମୋ ସ୍ତ୍ରୀ ମଧ୍ୟ ତାହା କରିପାରିବ। ଅବଶ୍ୟ ବହୁତ ଦିନ ଗତ ହୋଇଗଲାଣି। ଦେଖାଯାଉ। ଏପରି ଭାବି ସନାତନକୁ କହିଲି, ''ହଁ ଭାଇ, ତୁମ କଥା ପାଳନ କରିବି। ଭଗବାନ ମତେ ଏ ଭୟରୁ ରକ୍ଷା କରନ୍ତୁ।''

ସେତେବେଳକୁ ସମୟ ରାତି ୭ଟା ହେଲାଣି। ସନାତନ କହିଲା, ମୁଁ ଯାଉଛି ଓ ସେ ଚାଲିଯାଇଥିଲା।

ମୁଁ ଦୁଇତିନି ଦିନ ଗଭୀର ଚିନ୍ତାମଗ୍ନ ରହିଲି। ଦିନେ ଖରାବେଳେ ସ୍ତ୍ରୀ ବିଶ୍ରାମ ନେଉଥିବାବେଳେ ପାଖକୁ ଡାକିଲି। ସେ ଆସି ପାଖରେ ବସିଲେ। ମୁଁ ଅତୀତର ଘଟଣା ସବୁ କହିଲି। ତା'ର ଅତୀତ ଘଟଣାର କଥାଗୁଡ଼ିକ ମନେ ପଡ଼ିଗଲା। ସେ ବଡ଼ ମ୍ରିୟମାଣ ହୋଇଗଲେ। କିଛି ନକହି ଚୁପଚାପ୍ ବସି ରହିଲେ। ମୁଁ ପୁଣି କହିଲି, ''ବୁଢ଼ା ତ ହେଲି। ତମ ଅଭିଶାପ ଅନୁସାରେ ବାଟରେ ପଡ଼ି ମରିବି। ଶବ କୁଆଡ଼େ ଯିବ, କିଏ ଜାଣିବେ ନାହିଁ। ଏ ଅଭିଶାପ କଥା ମନରୁ କୁଆଡ଼େ ଯାଇଥିଲା। ଏବେ ମନେପଡ଼ି ମତେ ଭୂତପରି ମାଡ଼ି ବସିଛି। ଭୟରେ ମୁଁ ସାତ ଆଠଦିନ ହେବ ବୁଲିବାକୁ ଯାଉନାହିଁ। ଘର ବାହାରକୁ ଗଲେ ଦାଣ୍ଡ ମତେ ବାଟପରି ଦେଖା ଯାଉଛି। ସତୀ ସ୍ତ୍ରୀର ଅଭିଶାପ ନିଶ୍ଚୟ ଘଟିବ। କଅଣ କହୁଛ ? ଅଭିଶାପଟା ପ୍ରତ୍ୟାହାର କରିନେଉନା।'' ମୋ କଥା ଶୁଣି ସେ ଦୁଃଖରେ ଭାଙ୍ଗିପଡ଼ିଲେ। କାନ୍ଦ କାନ୍ଦ ହୋଇ କହିଲେ, ''ଅଭିଶାପ ପ୍ରତ୍ୟାହୃତ ହୁଏ ନାହିଁ। କେବଳ ଦୁର୍ବାସା ମୋଡ଼ିଫାଏ କରିଥିଲେ। ଏ ଅଭିଶାପ ମୂଳରୁ ଅଶୁଦ୍ଧ। କାରଣ ସତୀ ସ୍ତ୍ରୀକୁ ବୈଧବ୍ୟ ଦଶା ଲାଗେ ନାହିଁ। ତାହାର

ସ୍ୱାମୀ ଅମର। ଅମରକୁ ମର ବୋଲି କହିଲେ ସେ କିପରି ମରିବ ? ପାତ୍ରାପାତ୍ର ବିଚାର-ଶୂନ୍ୟତା ଦୋଷରେ ଏ ଅଭିଶାପ ଦୂଷିତ। ତେଣୁ ଏହା ଅଶୁଦ୍ଧ ଓ ଶକ୍ତିହୀନ।'' ଏତିକି କହି ସେ ଉଠି ଚାଲିଗଲେ।

ମୁଁ ସ୍ତବ୍ଧ ହୋଇଗଲି। ମୋ ଦେହରୁ ଝାଳ ବୋହିଗଲା। ବାଟରେ ପଡ଼ି ମରିବା ଭୟ ଭୂତ ମୋ ମୁଣ୍ଡରୁ ଓହ୍ଲାଇଗଲା। ମୋ ମନରେ କିପରି ଗୋଟାଏ ଆନନ୍ଦ ଉଲ୍ଲାସର ଭାବ ସଞ୍ଚାରିତ ହେଲା। ମନେ ମନେ କହିବାକୁ ଲାଗିଲି, ''ମୁଁ ଅମର, ମୁଁ ଅମର।''

କିଛି ସମୟ ପାଇଁ ପରିବେଶ ଶାନ୍ତ ଗମ୍ଭୀର ହୋଇଗଲା। ହଠାତ୍ ତୁଳସୀ ଓ ଜଳନ୍ଧର ଉପାଖ୍ୟାନ ମନେ ପଡ଼ିଗଲା। ମୁଁ ସ୍ତ୍ରୀଙ୍କୁ ଡାକି ପଚାରିଲି, ''ଆଚ୍ଛା ମହାସତୀ ତୁଳସୀର ସ୍ୱାମୀ ହୋଇ ଜଳନ୍ଧର କିପରି ମଲା ? ସେ ତ ଅମର ହେବା କଥା'' ସେ କହିଲେ, ''ତୁଳସୀର ସତୀତ୍ୱ ଅପହୃତ ହେଲାପରେ ଜଳନ୍ଧର ମଲା। ସେଇଟା ନାରାୟଣଙ୍କର ମାୟା। ତୁମେ ମୋ ବିଷୟରେ ନିଶ୍ଚିତ ରୁହ, ତୁମ ଅମରତା ମୋ ହାତରେ।''

## ॥ ପ୍ରଥମ ॥

ଶୁକ୍ରବାରେ ଜନ୍ମିଥିଲ ଡାକନାମ ଶୁକ
ସେହି ଶୁକ୍ରବାରେ ଚାଲିଗଲ ଅଚାନକ ।୧।

ଭଲ ନାମ ବାଛି ବାପା ଜାନକୀ ରଖିଲେ
ଅଧମ ହେଲେହେଁ ମୋତେ ଯୋଇଁରେ ବରିଲେ ।୨।

ଭଲ ଯୋଡ଼ି ହେଲା ବୋଲି ଲଭିଲେ ତୋଷଣ
ଭାବିଲେନି ରାମସ୍ତିରୀ ଭୋଗଇ କଷଣ ।୩।

ଦୀର୍ଘ ବନବାସ ପରେ ନିର୍ବାସନ ଯୋଗ
କେଉଁ ଦୁଃଖ ଜାନକୀଙ୍କୁ ନ ହୋଇଛି ଭୋଗ ।୪।

ସେହିପରି ସତୀ ତୁମେ ଭୋଗିଲ କଷଣ
ବନବାସଠାରୁ ନୁହେଁ ପରବାସ ନ୍ୟୂନ ।୫।

ଜାନକୀଙ୍କୁ ନିର୍ବାସନ ବନବାସ ପରେ
ତୁମ ନିର୍ବାସନ କିନ୍ତୁ ଚାଲେ ଏକାଧାରେ ।୬।

ଜାନକୀ ହୋଇଣ ତୁମେ ରାମ କଲ ସ୍ୱାମୀ
କେ ଚାହନ୍ତା ତୁମ ଦୁଃଖ ଏଡ଼େ ପରାକ୍ରମୀ ।୭।

ସେଥିପାଇଁ ଦୁଃଖ ସତୀ କେବେ କରିନାହଁ
ଆମପାଇଁ ତୁମ୍ କାହିଁ ? ବେଳେ ବେଳେ କୁହ ।୮।

ମୋ ପାଶେ ନଥାଏ ତୁମ କଥାର ଉତ୍ତର
ଜାଣି ଏହା ସେଥିପାଇଁ କରନା ଜିଗର ।୮(କ)।

ବନବାସେ ନିର୍ବାସନେ ଦିନ ଗଡ଼ି ଚାଲେ
ସୁଖ ଦୁଃଖ ସମ ମଣି ଆମେ ବଞ୍ଚିଥିଲେ ।୮(ଖ)।

ନିଃସଙ୍ଗ ମୁଁ ସଦାମାତ୍ର ଏବ ନିଃସଙ୍ଗତା
ଭାଷାରେ ବରଣିବାକୁ ନାହିଁ ମୋ କ୍ଷମତା ।୯।

ଅତୀତ ସ୍ମରଣେ ମନ ଶରୀର ମୋହର
ହୁଅଇ ଅବଶ, ତହୁଁ ଅଛି କି ନିସ୍ତାର ।୧୦।

ରତ୍ନଗର୍ଭା ତୁମେ ବୋଲି କହନ୍ତି ବନ୍ଧୁଏ
ଗଢ଼ିଛ ସାତ ସନ୍ତାନେ ରତନ ପରାଏ ।୧୧।

ଅକର୍ମା ପଣକୁ ମୋର ଦେଇଛ ଘୋଡ଼ାଇ
ଧନ୍ୟ କରିଅଛ ମୋତେ ସେ ରତନ ଦେଇ ।୧୨।

ମୁଁ ସିନା ଅକର୍ମା ମାତ୍ର ତୁମେ ଯଶସ୍ୱିନୀ
ଲୁଚି ଛପି କରି କିମ୍ପା ଛାଡ଼ିଲ ମେଦିନୀ ।୧୩।

ଶେଷକଥା ପଦେ ଅଧେ ଶୁଣାଇଲ ନାହିଁ
ଶୁଣିଲ ବି ନାହିଁ ପଦେ କା ମୁଖକୁ ଚାହିଁ ।୧୪।

ଛାଡ଼ିଯାଉଛ ସେପାଇଁ ମନକଷ୍ଟ ନାହିଁ
ଜୀବନ୍ତ ବେଳେ ଦର୍ଶନ ହୋଇଲା ବି ନାହିଁ ।୧୫।

ଏପରି କାହିଁକି କଲ ବିସ୍ମୟ କାରଣ
ଅଭିମାନେ ଅବା ରୋଷେ ତେଜିଲ ପରାଣ ।୧୬।

ଅଭିମାନ ରୋଷ ତୋଷ ନଥିଲା ତୁମର
ତେଜିଲ ଇହ ଜୀବନ ନରଚି ବିକାର ।୧୭।

ଘେନିନାହଁ ସେବା କାର ଦେଇନାହଁ ସେବା
ଅନାସକ୍ତି ଥିଲା ତୁମ ଚରିତ୍ରର ଆଭା ।୧୮।

ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ନୀତିରେ ସଂସାର
ନିର୍ବାହ ଶାନ୍ତିରେ ତୁମେ ଗଲ ସ୍ୱର୍ଗପୁର ।୧୯।

ମୋ ଆଗରୁ ଯିବ ବୋଲି କହୁଥିଲ ସଦା
ସତହେଲା ତୁମ କଥା ନରହିଲା ବାଧା ।୨୦।

ସ୍ୱାମୀ ଆଗେ ମଲେ ସ୍ତିରୀ ହୁଏ ଭାଗ୍ୟବତୀ
ଏ ନୀତିରେ ଥିଲା ତୁମ ଅଟଳ ପ୍ରତୀତି ।୨୧।

ମନୋବାଞ୍ଛା ପୂର୍ଣ୍ଣ କଲ ତେଜିଗଲ ମୋତେ
ଅଭାଗାର କଥା ଟିକେ ଭାବିଲନି ଚିତ୍ତେ ।୨୨।

ମୁଁ ପଛେ ନରକେ ଯାଏ ତୁମେ ଭାଗ୍ୟବତୀ
ଏଡ଼େ ସ୍ୱାର୍ଥପର ବୋଲି ନଥିଲି ମୁଁ ଚିନ୍ତି ।୨୩।

ଅହ୍ୟ ଡେଙ୍ଗୁରା ବଜାଇ ସ୍ୱର୍ଗ ଦ୍ୱାର ଯାଏ
ଗଲି ସିନା, ତା ପରେ କି ଗତି ଆଉ ଥାଏ ।୨୪।

ଜଳିଗଲା ଦେହତୁମ ଦେଖିଲି ନୟନେ
ଯେ ଦେହକୁ ନେଇ ସୁଖ ଭୋଗିଛି ଜୀବନେ ।୨୫।

ଭସ୍ମୀଭୂତ ହେଲା ତାହା ଜଳେଗଲା ଧୋଇ
ଚିହ୍ନବର୍ଣ୍ଣ ତୁମର ତ ଆଉ କାହିଁ ନାହିଁ ।୨୬।

ଫଟୋଟିଏ କାନ୍ଥେ ଟାଙ୍ଗି ବୋହୂ ପୂଜାକରେ
ଅନାଇ ଅନାଇ ତାକୁ ଦିନ ମୁହିଁ ସାରେ ।୨୭।

ମନ ଭାଷା ଟପି ଏବେ ତୁମ ଭଲ ପଣ
ମୂର୍ତ୍ତିମନ୍ତ ହୋଇ ସଦା କରେ ବିଚରଣ ।୨୮।

କେତେ ଭଲ ଥିଲ ତୁମେ ସ୍ମୃତିଚାରଣରେ
ଅସମର୍ଥ ହେଉଛନ୍ତି ତାହା କହିବାରେ ।୨୯।

ନାମକୁ ମୁଁ ସ୍ୱାମୀ ଥିଲି ଭର୍ତ୍ତା ତ ନଥିଲି
ବାସ୍ତବ ଚିତ୍ର ଉଖାରି ନୀତି କହୁଥିଲି ।୩୦।

ଶୁଷ୍କ ନୀତି ବାକ୍ୟରେ କି ମନ ସରସଇ
ଉଦାସୀନ ହୋଇ ଶୁଣ ବାଦ କରନାହିଁ ।୩୧।

ଅବିକଳ ଅନୁରକ୍ତି ଥିଲା ତୁମ ପ୍ରତି
ତୁମର ବି ଥିଲା ତହିଁ ଅଟଳା ପ୍ରତୀତି ।୩୨।

ମତଲବୀ କେହି କେହି ପୋଷନ୍ତି ଧାରଣା
ତମ ସାଙ୍ଗେ ନଥିଲା ମୋ ଭଲ ବୁଝାମଣା ।୩୩।

ଧାରଣାର ସତ୍ୟାସତ୍ୟ ପରଖିବା ପାଇଁ
ତମେ ଗଲାପରେ ଆଉ ଉପାୟ ତ ନାହିଁ ।୩୪।

ଖୋଲାମନ ନେଇ ଆମେ ସକଳ ବିଷୟ
ଆଲୋଚନା କରୁଥିଲେ ନଥିଲା ସଂଶୟ ।୩୫।

ଏ ପ୍ରକାର ଭାବ କେବେ କହିନାହଁ ତୁମେ
ପରସ୍ପର ଆନୁଗତ୍ୟେ ବନ୍ଧାଥିଲେ ଆମେ ।୩୬।

ଉପର ଠାଉରିଆଙ୍କ ଅଠିକଣା ମତ
ଶ୍ରୁତିକଟୁ ହେଲେ ମଧ୍ୟ ନୁହେଁ ବିଚଳିତ ।୩୭।

ପ୍ରେତପୁରେ ଅଛ ଅବା ପିତୃଲୋକେ ଗତ
ପୁନର୍ଜନ୍ମ ଲଭିଲଣି ଅବା ପୂର୍ଣ୍ଣ ମୁକ୍ତ ।୩୮।

ଦେବୀରୂପେ ସ୍ୱର୍ଗପୁରେ କର ଅବସ୍ଥାନ
ଏ ଅଧମ ପରେ ଦୃଷ୍ଟି ହେଉ ସକରୁଣ ।୩୯।

କେତେଦିନ ପରେ ମୁଁ ବି ଛାଡ଼ିବି ଶରୀର
ତୁମପରି ସୁଖ-ମୃତ୍ୟୁ ହେବ କି ମୋହର ।୪୦।

ତୁମେ ସିନା ଭଲ ଲୋକ ମୁଁ ତ ମନ୍ଦେଗଣା
ମୋହପାଇଁ କାହାର ବି ନୋହିବ କାନ୍ଦଣା ।୪୧।

ମୃତ୍ୟୁପୂର୍ବ ରୋଗାଦିରେ ହେବି ଯଦି ଘାଣ୍ଟି
ବୋଲିବେ ତାଙ୍କ ଭାବଟି ସତ ଆଉ ଖାଣ୍ଟି ।୪୨।

ତୁମ ଭଲ ପଣ ଆଉ ତୁମ ସୁଖ ମୃତ୍ୟୁ
ମୋହପାଇଁ ରଖିଗଲା ଅସୁବିଧା ବସ୍ତୁ ।୪୩।

ଯାହା ହବାର ଅଛି ତା ହୋଇବ ନିଶ୍ଚୟ
ଉଚିତ୍ ନୁହେଁ ଆଗରୁ ହୋଇବା ଅଥୟ ।୪୪।

ବିଧବା ହୋଇଲେ ନାରୀ ହୁଏ ହତଶିରୀ
ବିପତ୍ନୀକ ନର କିମ୍ବା ହୁଏନି ସେପରି ।୪୫।

କାହିଁକି ଏ ବିଷମତା କିଏ ୟା ନିୟନ୍ତା
ନାରୀ ଭୋଗଇ ଯାତନା ନରକୁ ମାଫିତା ।୪୬।

ମୋ ବିଚାରେ ସମଦଶା ଉଭୟଙ୍କୁ ହେଉ
ଅଥବା ଏ ଦଶାଫସା ମୂଳୁ ଉଠିଯାଉ ।୪୭।

ସଦା ରୋଗୀ ହେଲ ବୋଲି ଉଣାହେଲା ମାନ
ଯେ ଯାହା କହିଲା ତାହା ଅକାତରେ ଶୁଣ ।୪୮।

ତୁମ ଅସମ୍ମାନ ମୋର ମନକୁ ବାଧଇ
ହେଲେ ପ୍ରତିବାଦ କେବେ କରଇ ମୁଁ ନାହିଁ ।୪୯।

ମୁରବି ପଣ ଆମର ନଥିଲା ତ ଘରେ
ଚାଳିତ ହୁଅନ୍ତି ଆମେ ଚାଳକ ନଥିଲେ ।୫୦।

ଭାବ ଆଉ ବ୍ୟବହାର ମଧ୍ୟେ ସମନ୍ୱୟ
ନଥିଲା କାହାରି ବୋଲି ହୁଏ ଅନୁମେୟ ।୫୧।

ତଥାପି ଏପାଇଁ ଦୁଃଖ ପ୍ରକାଶିନା କେବେ
ଗାଳିମନ୍ଦ ରୁକ୍ଷ ଭାଷା ଉଚ୍ଚାରିନ ଲବେ ।୫୨।

ସର୍ବଂସହା ଭାବ ଅବା ମନରେ ଜଡ଼ତା
ବିଚାରିନି କେହି ଏହା ଦେଇଣ ଗୁରୁତା ।୫୩।

ଗ୍ରାମକୁ ଯିବାକୁ ତୁମ ମନର ବାସନା
ଅପୂରଣ ରହିଗଲା ମୋହପାଇଁ ସିନା ।୫୪।

ରିକ୍ସା, ବସ୍, ଟେମ୍ପୁରେ ତ ଯିବାଲୋକ ମୁହିଁ
ମୋ ସାଙ୍ଗରେ ଗଲେ ଅସୁବିଧା ଭୋଗିବଇଁ ।୫୫।

ବିକଳ୍ପ ବ୍ୟବସ୍ଥାରେ ମୋ ନଥାଏ ଆଗ୍ରହ
ତୁମେ ମଧ୍ୟ ସେ ନୀତିରେ ଏକମତ ହୁଅ ।୫୬।

ଭଲ ହେବ ପୁଅ ଗଲେ ତା ସଙ୍ଗରେ ଯିବ
ସକାଳୁ ଯାଇଁ ସଞ୍ଜକୁ ଫେରିଆସି ହେବ ।୫୭।

ଏ ସୁଯୋଗ ଅପେକ୍ଷାରେ ଦିନ ଗଲା ବୋହି
ଗ୍ରାମକୁ ଯିବା ନୋହିଲା ସ୍ୱର୍ଗେ ଗଲ ଧାଇଁ ।୫୮।

ଢେଙ୍କାନାଳ ଯିବ ବୋଲି ପୁଅକୁ ଖବର
ପଠାଇଲ ପୁଅ ଆସି ନେଲା ସ୍ୱର୍ଗଦ୍ୱାର ।୫୯।

ବିଧିର ବିଧାନ ଜାରୀ ଭବେ ଏପ୍ରକାରେ
ଜାଣି ମଧ୍ୟ ଅଜଣାରେ ନର ଗତିକରେ ।୬୦।

ମାସାଧିକ କାଳ ଏବେ ହେଲାଣି ଅତୀତ
କାହାରିକୁ ସ୍ୱପ୍ନେ ତୁମେ ହୋଇନାହଁ ଦୃଷ୍ଟ ।୬୧।

ନିଜଭାବ ନେଇ ଲୋକ ଦେଖଇ ସ୍ୱପନ
ଜଣାଗଲା ଭାବନାହିଁ ଫାଙ୍କା ଆସ୍ଫାଳନ ।୬୨।

ମୋକଥା ସ୍ୱତନ୍ତ୍ର ମୁଁ ତ ଶୁଷ୍କ ନୀତିବାଦୀ
ନୀତିବାଦକ ପ୍ରତି କେ ହୁଏନା ଦରଦୀ ।୬୩।

ଜାଣେ ମୁଁ ସ୍ୱପ୍ନରେ ଦେଖା ଦେବନାହିଁ ମୋତେ
ଭାବଥାଇଁ ମଧ ଯୁକ୍ତ ଅଭାବି ସଙ୍ଗତେ ।୬୪।

ନିରୀହ ପଣ ତୁମର ମୁହେଁ ଉଠେ ଫୁଟି
ଅନାସକ୍ତି ଭାବ ତହିଁ ଆସଇ ଉକୁଟି ।୬୫।

କେବେ ପୋଷ ନାହିଁ କିଛି ପାଇବାର ଆଶା
ଦେବାର କାହାକୁ କିଛି ନଥାଏ ଭରସା ।୬୬।

ଏପ୍ରକାର ଭାବଯୁକ୍ତ ମୁହଁଟି ତୁମର
ସର୍ବଦା ନାଚି ଯାଉଛି ଆଖି ଆଗେ ମୋର ।୬୭।

ମୋହର ଅଯୋଗ୍ୟ ପଣ କାରଣ ତହିଁର
ଜାଣିମଧ କେବେ କରିନାହଁ ଅନାଦର ।୬୮।

ତୁମ ବୁଝାମଣା ଆଉ ତୁମର ବିଚାର
ଭାବିଲେ ମନରେ ଜାଗେ ବିସ୍ମୟ ଅପାର ।୬୯।

ଯେତେ ଅଯୋଗ୍ୟ ହେଲେ ମୁଁ ସଂସାର ଆମର
ତୁମର ସଦ୍‌ଭାବ ବଳେ ହୋଇଛି ସୁନ୍ଦର ।୭୦।

ସ୍ୱର୍ଗେ ଥାଇ ଦେଖୁଥାଅ ପରବର୍ତ୍ତୀ ଗତି
ଦୋଷମତେ ଦେବନାହିଁ ହେଲେ ଅଧୋଗତି ।୭୧।

ଅକର୍ମା ମୁଁ କାଳେ କାଳେ ଜାଣିଅଛ ଭଲେ
ତୁମ ପୁଣ୍ୟ ବଳେ ବଞ୍ଚିଥିଲି ଧରାତଳେ ।୭୨।

ଅକାଳରେ ହଟିଗଲା ସେହି ପୁଣ୍ୟ ବଳ
ଅଣାୟତ୍ତ ସବୁଏବେ ବଞ୍ଚିବା ଅସାର ।୭୩।

ଡାକି ନିଅ ପାଖେ ସତୀ ଶୀଘ୍ର ହେଉ ଭେଟ
ଭୁଟ୍‌ଭାଟ୍ ହେବା ପୁଣି ନଥିବ ସଙ୍କଟ ।୭୪।

ଏତେ ସୁଗୁଣ ଥାଇ ବି ମୋର ସଙ୍ଗ ଘେନି
ସାଧୁ ଅସାଧୁ ପରାଏ ହୋଇଲ ଅଗୁଣୀ ।୭୫।

ସଂସାରୀ ଯାଏ, ସଂସାର କରି ଭରପୁର
ତମେ ଗଲ ଚିହ୍ନଟିଏ କାହିଁ ନ ରଖିଲ ।୭୬।

ବାକ୍ସଟିଏ ଅଛି ବୋଲି କହନ୍ତି ଏମାନେ
ବ୍ୟଙ୍ଗ ବିଦ୍ରୁପ ପରାଏ ମୋର ମନ ଘେନେ ।୭୭।

ଖୋଲିବେ ତାହାକୁ ପୁଣି ସର୍ବ ସମକ୍ଷରେ
ସନ୍ଦେହ-ବିଷ ଯେପରି କାହାକୁ ନଘାରେ ।୭୮।

ବାକ୍ସ ମଧ୍ୟେ ନାହିଁ କିଛି ମୋର ଦୃଢ଼ମତ
ଘେନା ନହୁଏ କାହାକୁ ହୁଏ ଉପେକ୍ଷିତ ।୭୯।

ମନଭଣା ହୁଏ ଯାକୁ ଭାବିପ୍ରହସନ
ନିଃସ୍ୱ ନିକଟରେ ହୁଏ ବସ୍ତୁର ସନ୍ଧାନ ।୮୦।

ସଂସାରରେ ଥିଲେ ଆମେ ନଥିଲେ ସଂସାରୀ
ସଂଗ୍ରହ ସାଇତା ଦେଇଥିଲେ ଦୂର କରି ।୮୧।

ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ରଖିଲେ ଶରୀର
ଶରୀର ଛାଡ଼ିଲା ମାତ୍ରେ ସବୁ ନିରାକାର ।୮୨।

ସବୁ ନାହିଁର କାରଣ ଅଟଇ ମୁଁ ଦେବୀ
ଅକ୍ଷମତା ହେଜି ମୋର କରନାହିଁ ଦାବୀ ।୮୩।

ଜୀବନ୍ତେ ଦେଇନା ଗାଳି ମରଣାନ୍ତେ ଦେବ
ଦେଲେ ଦିଅ ମୁଣ୍ଡ ପୋତି ଅଧମ ସହିବ ।୮୪।

ଭାବରେ କାରୁଣ୍ୟ ସୃଷ୍ଟି କରେ ଉଦ୍‌ବେଳନ
ଲୁହ କୋହ ରୂପେ ତାହା ଲଭେ ପ୍ରକାଶନ ।୮୫।

ତୁମର ନିର୍ଜୀବ ଦେହ ଦେଖିଲି ଏ ଡୋଳେ
ଦେଖିଲି ପୁନଶ୍ଚ ତାହା ଜଳିଲା ଅନଳେ ।୮୬।

କୋହ ସହ ଲୁହ ଟିକେ ଝରିନି ନୟନୁ
କଠିନ ହୃଦୟ ମୋର ପାଷାଣ କି ତନୁ ? ।୮୭।

କାହିଁକି ଏପରି ହେଲା କହିକି ପାରିବ
ଛାଡ଼ିଥିଲେ ବହୁକାଳୁ ଶରୀରର ଭାବ ।୮୮।

ଆତ୍ମା ଆମେ ଅମର ସେ, ସୁଖ ଦୁଃଖ ଉର୍ଦ୍ଧ୍ୱେ
ସେ ଭାବରେ ଯେଣୁ ସ୍ଥିତ, ଜଗତ କି ବାଧେ ? ।୮୯।

ଜୀବନ ପ୍ରତି ମୋହର ନଥିଲା ଆସକ୍ତି
ଆଶୁ ମରଣରେ ସଦା ଥିଲା ମୋର ମତି ।୯୦।

ଭାବୁଥିଲି ମରିଗଲେ ସରିଯିବ ଦୁଃଖ
ମରଣ ପ୍ରତି ସର୍ବଦା ଥିଲି ମୁଁ ଉନ୍ମୁଖ ।୯୧।

ତୁମର ଭାବନା ମାତ୍ର ଥିଲା ବିପରୀତ
ମରିବାକୁ କେବେ ତୁମେ ଚାହୁଁ ନଥିଲ ତ ।୯୨।

ଜୀବନ-ମୋହ ତୁମର ଥିଲା ଅତିରିକ୍ତ
ମୋ କଥାରେ କେବେ କର ନାହିଁ କର୍ଣ୍ଣପାତ ।୯୩।

ମଣିଷ ଭାବନା ଆଉ ବିଧିର ବିଧାନ
କେବେ ହୁଏ ନାହିଁ ଉଭୟଙ୍କର ମିଳନ ।୯୪।

ବୟୋଜ୍ୟେଷ୍ଠ ହୋଇ ମୁହିଁ ରହିଛି ଜୀବିତ
ବହୁ କନିଷ୍ଠା ହେଲେ ବି ତୁମେ ହେଲ ମୃତ ।୯୫।

ମରିବାକୁ ଚାହୁଁ ଥିବା ଲୋକ ମରେ ନାହିଁ
ବଞ୍ଚିବାକୁ ଚାହୁଁଥିବା ଲୋକ ଛାଡ଼େ ଭୂଇଁ ।୯୬।

ମରଣ ତୁମର ହେଉ ମୋ ବଞ୍ଚିବା କାଳେ
ଇଚ୍ଛା କରୁଥିଲି ସଦା ପରିସ୍ଥିତି ଭୋଳେ ।୯୭।

ଉଭୟଙ୍କ ଇଚ୍ଛା ଏକ ଶୁଣିବାକୁ ଭିନ୍ନ
ବିଧାତା ବୁଝି ରଚିଲେ ତୁମର ନିଧନ ।୯୮।

ମୋତେ ମୁକ୍ତ କଲେ ପ୍ରଭୁ ତୁମର ଚିନ୍ତାରୁ
ତୁମେ ବି ମୁକ୍ତି ଲଭିଲ ଦେହ ଯାତନାରୁ ।୯୯।

ପରିସ୍ଥିତି ଅନୁକୂଳ ଉଭୟଙ୍କ ପାଇଁ
ଅସଂସାରୀ ଭାବ ଆଉ ଲଜ୍ଜା ଦେବନାହିଁ ।୧୦୦।

ସଂସାର ଶୃଙ୍ଖଳା ସବୁ ନାରୀକୁ ଲାଗଇ
ଯୋଡ଼ି ଭାଙ୍ଗିଲେ ଶୃଙ୍ଖଳା ଗୁରୁତା ହରାଇ ।୧୦୧।

ସବୁମନ୍ତେ ମୁକ୍ତ ଏବେ ଶଙ୍କାହୀନ ଚିତ୍ତ
ବିହଙ୍ଗପରି ଉଡ଼ିବି ନ ବିଚାରି ପଥ ।୧୦୨।

ଉଡୁ ଉଡୁ ଯେଉଁ ଘରେ ହେବି ଉପନୀତ
ସେ ଘରକୁ ଘରମଣି ହେବି ଆତଯାତ ।୧୦୩।

ବର୍ଷରେ ତିନୋଟି ଶ୍ରାଦ୍ଧ ପାଳୁଥିଲି ମୁହିଁ
ସେ କର୍ମେ ଅଯୋଗ୍ୟ ହେଲି ତୁମକୁ ହରାଇ ।୧୦୪।

ଅକର୍ମା ପଣକୁ ମୋର ନିନ୍ଦିନାହଁ କେବେ
ଅଧିକ ସୁଗମ ତାକୁ କରିଦେଲ ଏବେ ।୧୦୫।

ବହୂକାକୁ ଖୋଜୁଥିବା ପଥେ ବୋଧେ ଏହି
ଏତେ ଦିନ ପରେ ପ୍ରାପ୍ତ କଲେ ଭାବଗ୍ରାହୀ ।୧୦୬।

ଏହିପରି କେତେ କଥା ଆସେ ସ୍ମରଣକୁ
ଲେଖୁଥିଲେ ଲେଖୁଥିବି ଶେଷ ନହେବାକୁ ।୧୦୭।

ତେଣୁ ଏଠାରେ ଏହାକୁ କଲି ସମାପନ
ସ୍ୱଭାବ ମୋ ଭୁଲି ସ୍ୱପ୍ନେ ଦେବ ଦରଶନ ।୧୦୮।

ତୁମ ହତଭାଗ୍ୟ ସ୍ୱାମୀ ମୁଁ ରାମ ମହାନ୍ତି
ଲେଖିଲି ଏଚିଠି ଏଥେ ନାହିଁ କିଛି ଭ୍ରାନ୍ତି ।୧୦୯।

ତଥାପି ଦୟିନି, କ୍ଷମା କରିଦେବ ମୋତେ
ତୁମ ବିଚାରରେ ଭୁଲ ଥାଏ ଯଦି ଏଥେ ।୧୧୦।

## ॥ ଦ୍ୱିତୀୟ ॥

ଅଭାବି ନିଜକୁ ଭାବେ ସିନାମୁଁ
ତୁମେ କେବେ କହିନାହଁ
ଆମ ଚଳଣିରେ ଅସନ୍ତୋଷ ଭାବ
କେବେ ବି ପ୍ରକାଶି ନାହଁ।

ଥିଲାବାଲା ଘର ଅଭାବ କାହାଣୀ
କେତେ କେତେ ଶୁଣାଯାଏ
ନଥିଲା ବାଲା ମୁଁ ଅଭାବେ ଜଡ଼ିତ
(ହେଲେ) କାହାଣୀ ତହିଁ ନଥାଏ।

ଉତ୍ତର ଜୀବନେ କାହାଣୀ ରଚିଲି
ମୋର ଅପାରଗ ପଣ
ବଖାଣେ ତୁମକୁ ଚେତେଇବା ପାଇଁ
ଆମ ହୀନସ୍ତା କାରଣ।

ଅଧିକାର ତୁମ, ରହିଅଛି ମୋତେ
ଭର୍ତ୍ସନା କରିବା ପାଇଁ
ଭର୍ତ୍ସନା କାହିଁକି କରନାହିଁ ମତେ
ଆଶ୍ଚର୍ଯ୍ୟ ମୁଁ ହୋଇଥାଇ।

ଉତ୍ତରରେ ମତେ ବରାବର କୁହ
ଅଯଥା କଥାରେ ମନ
ନିବେଶି କି ସୁଖ ପାଉଅଛ ତୁମେ
ନୁହେଁ ମୋର ଅନୁମାନ।

ପିଲାଙ୍କୁ ଚଳାଇ ଆମେ ଚଳୁଥିଲେ
ନଥିଲା ତ ଅସୁବିଧା
ପିଲା ପାରିଗଲେ ବୁଢ଼ାବୁଢ଼ୀ ହେଲେ
କ'ଣ ପାଇଁ ଆଉ ଚିନ୍ତା ?

କଅଣ କରିଛ ଅବା ନ କରିଛ
ଭାବନାରେ ନାହିଁ ଲାଭ
ପ୍ରଭୁ କୃପାବଳେ ଯେତିକି ଲଭିଛ
ତାକୁହିଁ ଯଥେଷ୍ଟ ଭାବ।

ପୁଅ ଯୋଗ୍ୟ ହେଲେ ସମ୍ପତ୍ତି କି ଲୋଡ଼ା
ସିଏ ତ ସମ୍ପତ୍ତି ଗଛ
ଆମ ଯତ୍ନ କ'ଣ ନେବେ ନାହିଁ ସିଏ
ବୃଥାରେ ହୁଅ ଅତର୍କ୍କ।

ଶୁଣି ତୁମ କଥା ହେଜି ତା ମନରେ
ଆଶ୍ଚର୍ଯ୍ୟ ଚକିତ ହୁଏ
ସଂସାର ବିଷୟେ ସ୍ୱଚ୍ଛ ଜ୍ଞାନ କହି
ତୁମକୁ ପୁଣି ଚେତାଏ।

ଯେଉଁ ମନ ନେଇ ଆମ ପୁଅ ବୋହୂ
ଆମ ସେବାରେ ତତ୍ପର
ସେହି ମନ ସେହି ଭାବ ସବୁଦିନେ
ରହିବ କି ହୋଇ ସ୍ଥିର ?

ବଦଳେ ମଣିଷ ବଦଳେ ସମାଜ
ବଦଳିଥାଏ ପ୍ରକୃତି
କିପରି ଭାବୁଛ ତାଙ୍କ ମନୋଭାବ
ସର୍ବଦା ଥିବ ଏମିତି।

ସ୍ୱଚ୍ଛ ଜ୍ଞାନ ନେଇ ସଂସାର ଦେଖୁଛ
ରହୁଛ ମୋହିତ ହୋଇ
କେତେବେଳେ କ'ଣ ଘଟିଯାଇ ପାରେ
ମନକୁ ତା ଛୁଉଁ ନାହିଁ।

ସରଳ ଭାବରେ ମାନିଯାଇ କୁହ
ମତେ ତା ଅଜଣା ନାହିଁ
ସେଥିପାଇଁ ପରା ଏତେ ହୁସିଆର
ହୋଇଣ ମୁଁ ଚଳୁଥାଇ ।

ଚାରି ବୋହୂ ନେଇ ଶାଶୂ ମୁଁ ହୋଇଛି
ଶାଶୂପଣ ମୋର କାହିଁ
ବରଂ ବୋହୂପରି ଆଦେଶକୁ ମାନି
ସଂକୁଚିତ ହୋଇ ଥାଇ ।

ତୁମ ଅଯୋଗ୍ୟତା ଦାୟୀ ଏଥିପାଇଁ
କହି ମୋତେ ଉସ୍‌କାଉଛ
ଭର୍ତ୍ସନା ତୁମକୁ କରିବା ପାଇଁକି
ବାରମ୍ବାର ଚେତୋଉଛ ।

ଗାଳି ମନ୍ଦରେ କି ଅବସ୍ଥା ବଦଳେ
ବରଂ ପାପଭାଗୀ ହେବି
ସ୍ୱାମୀ ନିନ୍ଦାକରି ନରକ ଗତିକୁ
ଡାକି ଯାହା ମୁଁ ଆଣିବି ।

ମନେ ପଡ଼ି ଏବେ ଏସବୁ କାହାଣୀ
ନୟନୁ ଲୋତକ ଝରେ
ତୁମ ବୁଦ୍ଧି ତୁମ ବିଚାର ଶଇଳୀ
ଅଭିଭୂତ ମତେ କରେ ।

## ।। ତୃତୀୟ ।।

ହେ ଶୁକ, ଆମର ୫୧ ବର୍ଷର ଦାମ୍ପତ୍ୟ ଜୀବନରେ ଯାହା ଯାହା ଘଟିଛି, ଗୋଟି ଗୋଟି କରି ମନେ ପଡୁଛି। ବିଶେଷତଃ ତୁମର ଘରଣୀପଣ ତୁମର ନାନା ଅସୁସ୍ଥତା ସତ୍ତ୍ୱେ ୫୦ ମସିହାରୁ ଆରମ୍ଭ ହୋଇ ୮୪ ମସିହା ଶେଷ ପର୍ଯ୍ୟନ୍ତ ଯେପରି ଚାଲିଥିଲା ଏବଂ ପରେ ଯେପରି ନିଷ୍ଠୁର ଭାବରେ ତାହା ତୁମଠାରୁ ଛଡ଼ାଇ ନିଆଗଲା, ମନେ ପଡ଼ି ମନକୁ ବିଷର୍ଣ୍ଣ କରୁଛି। ଘର ସଂସାର ବିଷୟରେ ମୋର କିଛି ଧାରଣା ନଥିଲା। ମୁଁ ଯେଉଁ ପରିବେଶରେ ବଢ଼ିଥିଲି, ସେଥିରୁ ଏ ବିଷୟରେ କିଛି ଜାଣିବାର ବା ଶିଖିବାର ନଥିଲା। ମୁଁ ଯାହା ଜାଣିଲି, ସବୁ ତୁମଠାରୁ ତୁମେ ଆସିଲା ବେଳକୁ ତୁମକୁ ୧୮ବର୍ଷ ବି ପୂରି ନଥିଲା। ଏତେ ଅଳ୍ପ ବୟସରେ ଏତେ କଥା କିପରି ଜାଣିଲ ବୋଲି ମନରେ ପ୍ରଶ୍ନବାଚୀ ସୃଷ୍ଟି ହୁଏ। ଘରପାଇଁ ଆସବାବ୍ ପତ୍ର ଯୋଗାଡ଼ କରିବା, ଘର ଚଳାଇବା, ସନ୍ତାନ ପାଳନ, ପର୍ବପର୍ବାଣୀ ବିଷୟରେ ତୁମର ଦକ୍ଷତା ଦେଖି ମୁଁ ଅଭିଭୂତ ହୁଏ। ପୂର୍ଣ୍ଣ ପ୍ରାଣରେ ତୁମ ସହିତ ସହଯୋଗ କରେ। ଆମେ ତ ଗରିବ ଲୋକ। ହେଲେ ତୁମେ ଗୋଟିଏ ସ୍ୱୟଂସଂପୂର୍ଣ୍ଣ ଘରଣୀ ପରି ଚଳୁଥିଲ। କୌଣସି ପ୍ରକାର ଅସୁବିଧା ନଥିଲା। ଘରର ଯାବତୀୟ କାମ ନିଜ ହାତରେ ସମ୍ପାଦନ କରୁଥିଲ। ତାହା ଭିତରେ ମନ୍ଦିର ଯିବା, ଯାନିଯାତ୍ରା ବୁଲିଯିବା, କା'ଘରକୁ ବୁଲିଯିବା ଇତ୍ୟାଦି କାମ ତୁମେ ବେଶ୍ ଖୁସିବାସିରେ କରୁଥିଲ। ପଡ଼ୋଶୀ ସୌହାର୍ଦ୍ଦ୍ୟ ଲାଭ କରିବାରେ ତୁମେ ଅଦ୍ୱିତୀୟା ଥିଲ କହିଲେ ଅତ୍ୟୁକ୍ତି ହେବ ନାହିଁ। ଆମ ଗାଁରେ ମଝିରେ ମଝିରେ ସ୍ୱଳ୍ପକାଳ ସ୍ଥିତିରେ ମଧ୍ୟ ତୁମେ ସମସ୍ତଙ୍କର ସ୍ନେହ ଆଦର ଲାଭ କରୁଥିଲ। ସବୁ ଘରଣୀଙ୍କ ପରି ତୁମେ ମଧ୍ୟ ଘରେ ଠାକୁରଙ୍କର ମୂର୍ତ୍ତି ବା ଫଟୋ ରଖି ନିୟମିତ ଭକ୍ତି ଓ ନିଷ୍ଠାର ସହ ପୂଜା କରୁଥିଲ। ପୂଜାପାଇଁ ଆବଶ୍ୟକୀୟ ଘଣ୍ଟ, ଦୀପ, ଧୂପଦାନି, ନୈବେଦ୍ୟ ପରିବେଷଣ ପାଇଁ ଛୋଟ ଛୋଟ ଥାଳିଆ, ଚନ୍ଦନ ପେଡ଼ି, ଚନ୍ଦନ କାଠ ଇତ୍ୟାଦି ଯୋଗାଡ଼ କରି ସଜାଇ ରଖିଥାଅ। ମୋର ମନେ ପଡୁଛି, ଭୋଗପାଇଁ ପାଚିଲା କଦଳୀ ବ୍ୟବସ୍ଥା କରିଥାଅ। ସଞ୍ଜବେଳେ ତୁଳସୀ ଚଉରା ଓ ଠାକୁରଙ୍କ ପାଖରେ ସଞ୍ଜଦୀପ ଦିଅ। ଗାଧୋଇ ସାରି ତୁଳସୀ ପାଳିତ ହେଉଥିଲା। ପିଲାଙ୍କର ରଜ, କୁଆଁର ପୂନେଇ, ଖୁଦୁରୁକୁଣୀ ଓଷା, ସରସ୍ୱତୀ ପୂଜା, ଗଣେଷ ପୂଜା ସମେତ ଅନେକ ପାରମ୍ପରିକ ପର୍ବ ପର୍ବାଣୀ ମଧ୍ୟ ବିଧିମୁତାବକ ଘରେ ପାଳିତ ହେଉଥିଲା। ପିତୃ ମାତୃ ଶ୍ରାଦ୍ଧ ଯଥାବିଧି ପାଳିତ ହେଉଥିଲା। କୁଣିଆ ମୈତ୍ର ଚର୍ଚ୍ଚାରେ ବି ତମେ କେବେ ଅବହେଳା କରୁନଥିଲ।

କିନ୍ତୁ ଭାଗ୍ୟର ବିଡମ୍ବନା, ତୁମର ଏ ସମସ୍ତ କର୍ମରେ ପୂର୍ଣ୍ଣଛେଦ ପଡ଼ିଲା ୮୫ ମସିହା ପ୍ରାରମ୍ଭରୁ ଯେତେବେଳେ ତୁମର ଅତିଥି ଜୀବନ ଆରମ୍ଭ ହେଲା। ଘର କରଣା ବିଲୁପ୍ତ ହେବା ସଙ୍ଗେ ତୁମର 'ମୁଁ', 'ମୋର' ଭାବ ବି

ଲୋପ ପାଇଲା । ନିଜର ଦେହକୁ ମୋର କହିବା ଛଡ଼ା ସାସାରରେ ତମର ମୋର କହିବା ପାଇଁ ଆଉ କିଛି ରହିଲାନାହିଁ । ଭାବର ସଙ୍କୋଚନ ସହ ତାଳ ଦେଇ କର୍ମ ବି ସଙ୍କୁଚିତ ହେବାରେ ଲାଗିଲା । ତେବେ ଏହି ପ୍ରାରମ୍ଭିକ ଅବସ୍ଥାରେ ତୁମର ପ୍ରିୟ ଠାକୁରପୂଜା କାମର କି ପରିସ୍ଥିତି ହେଲା, ମୁଁ ଠିକ୍ ଭାବରେ ମନେ ପକାଇ ପାରୁନାହିଁ । କିନ୍ତୁ ୯୦ ମସିହାରେ ତମେ ଯେତେବେଳେ ବଡ଼ପୁଅର ସିବିଁ ଘରକୁ ଆସିଲ, ସେତେବେଳେ ମୁଁ ତୁମକୁ ଠାକୁରପୂଜା ନ କରିବା ପାଇଁ କହିଲି । ତୁମେ ମୋର କଥା ମାନି ସେ କର୍ମରୁ ନିବୃତ୍ତ ରହିଲ । ଠାକୁରପୂଜା କାମଟି ତମର କେବଳ ଦଣ୍ଡବତରେ ସୀମିତ ରହିଲା । ଦିନରେ କୋଥଳି ସେବା ସାରି ଦଣ୍ଡବତ ହୁଅ, ସନ୍ଧ୍ୟାବେଳେ ଦଣ୍ଡବତ ହୁଅ ଏବଂ ରାତିରେ ଶୋଇବାକୁ ଯିବା ପୂର୍ବରୁ ଦଣ୍ଡବତ ହୁଅ । ତୁମର ପ୍ରିୟ ଫୁଲ ଚନ୍ଦନ ଦିଆ ପୂଜାରୁ ମୋର ପଦେ କଥାରେ ପ୍ରତିବାଦର ସ୍ୱର ନ ଉଠାଇ ନିବୃତ୍ତ ହୋଇଗଲ ଭାବିଲେ ମୁଁ ଆଶ୍ଚର୍ଯ୍ୟ ହୁଏ ।

ତୁମର ନିବୃତ୍ତିରେ ଆଶ୍ଚର୍ଯ୍ୟ ହେବାର ସତରେ କିଛି ନାହିଁ । କାରଣ ଘରର ଠାକୁର ଘରଣୀ ପୂଜନ୍ତି । ଏଥିରେ ତୁମେ ପ୍ରବେଶ କଲେ ଅସୁବିଧା ହୋଇପାରେ ବିଚାର କରି ମୁଁ ନିବୃତ୍ତିପାଇଁ ନିର୍ଦ୍ଦେଶ ଦେଲି । ତମେ ତ ମୋଠାରୁ ଅଧିକ ବୁଝିବା ଲୋକ । ପ୍ରତିବାଦ କାହିଁକି କରନ୍ତ ? ହୁଏତ ମୁଁ ନକହି ଥିଲେ ବି ତୁମେ ଆପେ ଆପେ ତାହା କରିଥା'ନ୍ତା ।

ଆମ ପରିସ୍ଥିତି ପୂର୍ବ ନିର୍ଦ୍ଦିଷ୍ଟ । ତାକୁ ଖାପ୍ ଖୁଆଇ ବଞ୍ଚିବା ପାଇଁ ଭଗବାନ ଆମକୁ ଗଢ଼ିଥିଲେ । ତାହା ନ ହୋଇଥିଲେ ଆମେ କାହାକୁ ଅଶାନ୍ତି ନଦେଇ, ନିଜେ ଅଶାନ୍ତି ନ ଭୋଗି ଚଳିପାରିଥାନ୍ତେ କି ? ଏ ସବୁ ଭଗବାନଙ୍କ ଦୟା । ତୁମେ କୌଣସି ପରିସ୍ଥିତିରେ ଅଶାନ୍ତ ହୋଇ ନାହଁ କିମ୍ବା ମୋତେ ଅଶାନ୍ତି ଦେଇନାହଁ । ମୁଁ ଭାବେ, ତମେ ଯେପରି ଆଗପଛ ସବୁ ଦେଖିପାରୁଥିଲ । ତମର ବିଚାର, ଧୈର୍ଯ୍ୟ, ସହନଶୀଳତା, ଶାନ୍ତିପ୍ରିୟତା ଅତି ଉଚ୍ଚକୋଟୀର । ତମେ ସବୁବେଳେ ମୋ ଚଳଣିକୁ ସୁଗମ କରିଛ ସିନା, କେତେବେଳେ ଅସୁବିଧା ସୃଷ୍ଟି କରିନାହଁ ।

ହଉ ଶୁକ, ଯାହା ହେବାର ଥିଲା ହୋଇଗଲା । ତମେ ତ ଅହ୍ୟରାଣୀ ହେବ ବୋଲି ଅବେଳରେ ମୋତେ ଛାଡ଼ି ଚାଲିଗଲ । ଗଲାଲୋକ ଆଉ କ'ଣ ଫେରେ ? ସ୍ମରଣ କରିବା, ସ୍ୱପ୍ନ ଦେଖିବା, ଲେଖିବା ଏ ସବୁ ନିରର୍ଥକ । ମୁଁ ସେଇ ଧନ୍ଦାରେ ଏଯାବତ୍ ମାତିଛି । ନିରର୍ଥକ କଥାରେ ଯଦି ମନ ମାତେ, ଆମେ ତାକୁ ପ୍ରଶ୍ରୟ ଦେବା କ'ଣ ଠିକ୍ ? ତେଣୁ ଏଣିକି ତୁମ ସ୍ମୃତିକୁ ମୁଁ ମନରୁ ବିତାଡ଼ନ କରିବାକୁ ଚେଷ୍ଟା କରିବି ।

## ।। ଆତ୍ମ-ଚିନ୍ତନ ।।

(୧)

ପୂଜା, ପାଠ କେବେ କରିନାହିଁ ପ୍ରଭୁ
ଅଧର୍ମି ଜୀବନ ମୋର
ସେ ପାଇଁ କି ଅବା ନିଷ୍ଠୁର ମୋ ପ୍ରତି
ଦୁଃଖ ଦେଲ ଘୋରତର ।୧।

ଅଜ୍ଞାନରେ ବୁଡ଼ି କାଟିଲି ଜୀବନ
ନ ବୁଝିଲି ତୁମ ମାୟା
ଅନ୍ତିମ କାଳରେ ଚେତନା ଜାଗୁଛି
କେତେ କାଳ ଆଉ କାୟା ।୨।

ଦରପାଠୁଆ ମୁଁ କି ବୃତ୍ତି କରନ୍ତି
ଅମଲା କିରାଣୀ ଛଡ଼ା
ସ୍ୱାଧୀନ ମନକୁ ଅଧସ୍ତନ ବୃତ୍ତି
ବର୍ଗକୁ ଗୋଲେଇ ଘରା ।୩।

ଯାହାଙ୍କ ଆୟାସେ ଲଭିଲି ଏ ବୃତ୍ତି
ଶିକ୍ଷକ ସେ ଥିଲେ ମୋର
ସ୍ମରି ତାଙ୍କ ସ୍ନେହ ତାଙ୍କରି ମନ୍ତବ୍ୟ
କରୁଛି ମାତ୍ର ଉଦ୍ଧାର ।୪।

ବିଭୁଙ୍କ ଦୟାରୁ ଚାକିରୀ ଜୀବନ
ସୁରୁଖୁରୁରେ ବିତିଛି
ଅତି ହୁସିଆର ହୋଇ ମୁଁ ଚଳିଛି
ବିଘ୍ନ କେବେ ନ ଘଟିଛି ।୫।

ପ୍ରମୋଶନ ଯେତେ ବେଳେ ଯାହା ପ୍ରାପ୍ୟ
ଅନାୟାସେ ଲଭିଅଛି
କିରାଣୀରୁ ଉଠି ଅଡ଼ିଟ ବିଭାଗେ
ସୁପରିଣ୍ଟେଡେଣ୍ଟ ହୋଇଛି ।୬।

ଅବସର ପରେ ଜଙ୍ଗଲ ନିଗମେ
ଚାକିରୀରେ କଲି ଯୋଗ
ତୁଚ୍ଛ ମନ୍ତବ୍ୟରେ ଦୁଇ ଦୁଇଥର
ଚାକିରି କରିଲି ତ୍ୟାଗ ।୭।

ଏପରି ଘଟଣା ଘଟିଥାନ୍ତା ଯଦି
ମୂଳ ଚାକିରୀର ବେଳେ
କି ଅବସ୍ଥା ମୋର ହୋଇଥାନ୍ତା ଏବେ
ଭାବିଲେ ହୃଦୟ ଥରେ ।୮।

ପ୍ରାରବ୍ଧ ପ୍ରଭାବୁ ବଞ୍ଚିଛି ମାତର
ନାହିଁ ସୁଖ ନାହିଁ ପ୍ରଭା
ପୁରୁଷାର୍ଥ ବିନା ଲଭିଛି କି କେହି
ସମ୍ପଦ, ସୁନାମ ଅବା ।୯।

ସୁକାର୍ଯ୍ୟେ, କୁକାର୍ଯ୍ୟେ ଯଶ ଅପଯଶ
ପ୍ରାଣୀଏ ଭବେ ଲଭନ୍ତି
ଦେଉଳ ତୋଳାଇ ବାଟେ ମଳ ତ୍ୟାଗି
ପ୍ରଖ୍ୟାତନାମା ବୋଲାନ୍ତି ।୧୦।

ମାତ୍ର ମୋ ଜୀବନ ନିଶ୍ଚଳ ନିସ୍ପନ୍ଦ
ନିସ୍ତରଙ୍ଗ ଜଳାଧାର
ନାହିଁ ଯଶ, ନାହିଁ ଅପଯଶ, ପୁଣି
ଅଖୋଜା ଅଲୋଡ଼ା ନର ।୧୧।

କ୍ରିୟା ପ୍ରତିକ୍ରିୟା ନିଶୂନ ଜୀବନ
ଶୂନ୍ୟତାରେ ଭରପୁର
ଜୀବିତ ମାତ୍ର ମୁଁ ମୃତ କୁହାଗଲେ
ଭୁଲ, ନ ହେବ ବିଚାର ।୧୨।

ପାନାହାର ବିନା ନାହିଁ ଆନ କର୍ମ
ନିଃସଙ୍ଗ ନିର୍ବାକ ହୋଇ
ସଖା କି ସୋଦର ନ ଆସନ୍ତି ଯେଣୁ
କାଟେ ଦିନ ଶୂନ୍ୟେ ଚାହିଁ ।୧୩।

ସବୁ କରମର ମୂଳତ ସମ୍ପତ୍ତି
କର୍ମ ହିଁ ସମ୍ପତ୍ତି ମୂଳ
ଅର୍ଜନେ କରମ ମୂଳତ ସମ୍ପତ୍ତି
କର୍ମ ହିଁ ସମ୍ପତ୍ତି ମୂଳ
ଅର୍ଜନେ କରମ ରକ୍ଷଣେ କରମ
ଲାଗିଥାଏ ସଦାବେଳ ।୧୪।

ମାତ୍ର ମୋହପାଇଁ ସମ୍ପତ୍ତିର ଦ୍ୱାର
ରୁଦ୍ଧ ଅଟେ ସଦାବେଳେ
କର୍ମ ହୀନତାର ପ୍ରତୀକ ହେ ପ୍ରଭୁ
କଲ କେଉଁ ପାପ ଫଳେ ।୧୫।

(୨)

ଶୈଶବ କାଳରେ ପିତୃହରା ହୋଇ
ପରଘରେ କଲି ବାସ
ଚାକିରୀ ଜୀବନ ଭଡ଼ା ଘରେ କାଟି
ଶେଷେ ବାସ ପୁତ୍ରପାଶ ।୧୬।

'ମୋର ଘର' ବୋଲି କହି ନ ପାରିଲି
ଜୀବନରେ କେବେ ଥରେ
ଏ ଦମ୍ଭରୁ ପ୍ରଭୁ ବଞ୍ଚିତ କରିଲ
ମୋତେ କେଉଁ ପାପ ଫଳେ ।୧୭।

ଯେତେ ଧନହୀନ ହେଲେ ହେଁ ସଂସାରୀ
ନିଜର କୁଡ଼ିଆ କରେ
ଖାଉ ବା ନଖାଉ ନିଜ ଘରେ ପଡ଼ି
ନିଜ ଦୁଃଖେ ଦିନ ସାରେ ।୧୮।

ମୋ ଭାଗ୍ୟେ ସେ ସୁଖ          ଲେଖିନାହିଁ ପ୍ରଭୁ
ସଦା ପର ବାସ ବାସୀ
ମନମରା ହୋଇ          କାଟଇ ଦିବସ
ସତେ କି ବଡ଼ ଉଦାସୀ ।୧୯।

ପରଘରେ ବାସ          ପୁଣି ଉପଜୀବି
ହେଲେ କଥା ସରିଗଲା
ଆତ୍ମବଳିଠାରୁ          ନୁହେଁ ଏ ନିଉନ
ବଞ୍ଚି ଥାଉଁ ଥାଉଁ ମଲା ।୨୦।

ତରି ମନ ଜଗି          କହି କହି କଥା
ବରଜି ନିଜର ରୁଚି
ପାଇଟି ଗଲିକି          ଗୋବର ଗଣେଶ
ଏବେ ବସି ଭାବୁଅଛି ।୨୧।

ଗାଆଁରେ ପୈତୃକ          ଘରେ ବାସ ପାଇଁ
ମନେ ମନେ କଲି ସ୍ଥିର
ଅର୍ଥ ଖର୍ଚ୍ଚ କରି          ମରାମତି କଲି
ପରେ ଜାଗେ ଭାବାନ୍ତର ।୨୨।

ବୋଲିବେ ସେମାନେ ବୁଲି ବୁଲି ଶେଷେ
ଏଠାରେ ହାଜର ହେଲା
ଜୀର୍ଣ୍ଣ କୁଡିଆରୁ          ଭାଗ ନେବା ପାଇଁ
ମନରେ ଲୋଭ ଜାଗିଲା ।୨୩।

ଏ ଲାଞ୍ଛନା ପ୍ରଭୁ          ଅଧିକ ବାଧନ୍ତା
ତେଣୁ ପରବାସ ଦୁଃଖ
ଚିରଦିନ ପାଇଁ          ଆଦରି ନେଇଛି
ଆଉ ନ ହେବି ବିମୁଖ ।୨୪।

(୩)

ପାଠ ପଢ଼ା ଦିନ          କାଟିଲି ଯେଠାରେ
ତା ମୋ ନିଜ ଅପାଘର

ପରଘର ମାତ୍ର ନିଜ ଘରୁ ବଳି
ପାଇଛି ସ୍ନେହ ଆଦର।୨୫।

ଅପା ଶାଶୁଙ୍କର ଅନାବିଳ ସ୍ନେହ
ଥିଲା ସଦା ମୋହଠାରେ
ସେହି ସ୍ନେହ ବଶେ ସମସ୍ତଙ୍କୁ ଭୁଲି
ରହିପାରିଲି ସେଠାରେ ।୨୬।

ସେହି ସ୍ନେହୁ ଟିକେ ଊଣା ହୋଇଥିଲେ
ସ୍ଥିତି ସମ୍ଭବି ନ ଥାନ୍ତା
ଜୀବନର ଗତି ଭିନ୍ନ ମୋଡ ନେଇ
ଭିନ୍ନ ପ୍ରକାର ହୁଅନ୍ତା ।୨୭।

ଯାହା ବା ବିକାଶ ଲଭିଛି, ସେତକ
କେଉଁ ସମ୍ଭବି ନଥାନ୍ତା
ଅନ୍ୟ ଭାବପରି ମୂରୁଖ ଶ୍ରେଣୀରେ
ଗତି ମୋର ହୋଇଥାନ୍ତା ।୨୮।

ଜୀବନ ବିକାଶ ଯା ପାଇଁ ଲଭିଲି
ସେ ତ ପରଲୋକ ଗତ
ଦିନକ ପାଇଁ ତ ତାଙ୍କରି ସେବାରେ
ହୋଇନାହିଁ ମୁହିଁ ରତ ।୨୯।

ସ୍ନେହ ପାଇ ସ୍ନେହ ନଦିଏ ଯେ ଲୋକ
ତାକୁ ଅବିବେକୀ କହି
ମୁଁ ଅଟେ କାହାର ନମୁନା ଏଥିରେ
ସନ୍ଦେହର ପ୍ରଶ୍ନ ନାହିଁ ।୩୦।

(୪)

ଅପା, ଅପାଶାଶୁ ନୁହନ୍ତି ପାଠୁଆ
ପାଠ ପଢ଼ା କି ବୁଝିବେ
ମୋ ପାଠ ପଢ଼ାରେ ମୁଁ ନିଜେ ମୁରବି
ଡର ମୋ ନଥିଲା ଲବେ ।୩୧।

ଅବହେଳା ବେଳେ ବେଳେ ହେଉଥିଲା
ତଥାପି ପାଠ ପଢ଼ାରେ
ଭଲ କରୁଥିଲି ଶ୍ରେଣୀ ପରୀକ୍ଷାରେ
ଶିକ୍ଷକେ ସନ୍ତୁଷ୍ଟ ଥିଲେ ।୩୨।

ମାଇନର ବୃତ୍ତି ପାଇ ହାଇସ୍କୁଲେ
ପଢ଼ିଲି ମନ ଖୁସିରେ
ଭଲଛାତ୍ର ବୋଲି ପ୍ରଶଂସା ଲଭିଲି
ମାତ୍ର ଶେଷ ପରୀକ୍ଷାରେ ।୩୩।

ଆଶା ଅନୁରୂପ ଫଳ ନକଲି ମୁଁ
ପଢ଼ାରେ ବାନ୍ଧିଲି ଡୋର
ମାଟ୍ରିକ୍ ପାସ୍‌କୁ କିରାଣୀ ଚାକିରୀ
ବିଧି ଲେଖିଛି କପାଳ ।୩୪।

ପାଠ ପଢ଼ା ପାଇଁ ବୃତ୍ତିଧନ ଥିଲା
ଏକକ ସମ୍ବଳ ମୋର
ସେ ଧନ ହାରିଲି ପାଠ ପଢ଼ା କଥା
ଭାବନାଟି ଅବାନ୍ତର ।୩୫।

ପ୍ରତିଯୋଗୀ ସହ ପାଠୀ ଛାତ୍ର ମୋର
ଉଚ୍ଚ ଶିକ୍ଷା ଲାଭ କଲା
ଉଚ୍ଚ ପଦବୀରେ ପ୍ରତିଷ୍ଠିତ ହୋଇ
ସୁଖେ ଜୀବନ ଯାପିଲା ।୩୬।

କି କରଣୀ ତା'ର ଥିଲା ଯାହା ମୁହିଁ
ନକଲି ବୋଲି ଭାବଇ
ପ୍ରାରବ୍ଧର ଖେଳ ଚାଲେ ଏହିପରି
ପ୍ରାଣୀ ତାହା ନ ବୁଝଇ ।୩୭।

ଉଚ୍ଚଶିକ୍ଷା ପାଇଁ ଆଗ୍ରହ ଆକାଙ୍କ୍ଷା
ନଥିଲା କି ମନେ ମୋର
ପାଠ ପଢ଼ା ପାଇଁ ସମ୍ବଳ ସୁଯୋଗ
ଅଧିକ ଥିଲା କି ତା'ର ।୩୮।

ଈର୍ଷାରୁ ଏକଥା କହୁନାହିଁ ମୁହିଁ
ଈର୍ଷା କି ତା ସାଥେ ସାଜେ
ରଜାର ସାଙ୍ଗରେ ଶୁଖୁଆ ବଣିଜ
ପରି ଏହା ମୁଁ ତ ହେଜେ ।୩୯।

ମୋହ ପରି ସିଏ ଗରିବ ତ ଥିଲା
ନଥିଲା ସାହା ସମ୍ବଳ
ମୋ ପରି ପୁଣି ସେ ବୁଝିବି ହାରିଲା
ଅବସ୍ଥା କି ଅନୁକୂଳ ।୪୦।

ପ୍ରାରବ୍ଧ ଯାହାର ଯେପରି ସେ ତାକୁ
ଟାଣିନିଏ ସେହି ପଥେ
ଉଦ୍ୟମରେ ଫଳ ମିଳେ ମାତ୍ର ଏହା
ସମରଥ କି ତା ସାଥେ ।୪୧।

ଉଚ୍ଚ ଶିକ୍ଷାରେ କି ଉଚ୍ଚ ପଦମିଳେ
ପ୍ରାରବ୍ଧ ଶୁଭ ନଥିଲେ
ସ୍ୱଳ୍ପ ବିଦ୍ୟ ଲୋକ ଉଚ୍ଚାସନ ଲାଭ
କରେ ନାହିଁକି ଭବରେ ? ।୪୨।

ପଢ଼ାବନ୍ଦ ହେଲା ଗାଆଁକୁ ଆସିଲି
ବୁଝି ଘର ଦୁରାବସ୍ଥା
ଆକୁଳିତ ହେଲା ମାନସ ମୋହର
ନ ଦିଶିଲା ମୋତେ ରାସ୍ତା ।୪୩।

ମାଆ ଭାଇ, ଭଗ୍ନି ରୁହନ୍ତି ଗାଆଁରେ
ପୂର୍ଣ୍ଣ ନିସମ୍ବଳ ହୋଇ
ବଡ଼ ବାପାଙ୍କଠୁ ଜାଣିଲି ଆମର
ଚାଷ ଜମି କିଛି ନାହିଁ ।୪୪।

ଶତାଧିକ ମାଣ ଚାଷ ଜମିଥିଲା
ଜେଜେବାପାଙ୍କ ଅମଳେ
ବିକ୍ରିବଟା କରି ସମସ୍ତ ସମ୍ପତ୍ତି
ସାରିଲେ ସେ ଅବହେଳେ ।୪୫।

ଘର ବାରି ମଧ୍ୟ ଏ ବିକ୍ରି କବଳୁ
ନିସ୍ତାର ଲଭିଲା ନାହିଁ
ଅର୍ଦ୍ଧାଧିକ ବିକ୍ରି ହୋଇଛି ତହିଁରୁ
ଅଳ୍ପ କିଛି ଅଛି ରହି ।୪୬।

ଦୁଃଖେ ଦୀର୍ଘଶ୍ୱାସ ଛାଡ଼ି ବଡ଼ ବାପା
ବଖାଣିଲେ ଏ ସମ୍ବାଦ
ଶୁଣି ହତବାକ୍ୟ ହେଲି ମାତ୍ର ଭାଗ୍ୟ
ସାଙ୍ଗେ କି ସାଜେ ବିବାଦ ।୪୭।

ଘର ବାରି ଜମି ଯାହାଥିଲା ତାହା
ଭାଗବାଣ୍ଟ ହୋଇଗଲା
ମାତ୍ର ତାହା ଆମ ଭରଣ ପୋଷଣେ
ସହାୟକ ନ ହୋଇଲା ।୪୮।

ସମ୍ବଳ ନଥାଇ ଛୋଟ ଚାକିରିରେ
କୁଟୁମ୍ବ ପୋଷଣ କାମ
ତା ସଙ୍ଗରେ ପୁଣି ସାମାଜିକ କ୍ରିୟା
ଅଟଇ ବଡ଼ ବିଷମ ।୪୯।

ସଂସାର ଜଞ୍ଜାଳ ତୁଲାଇବା ପାଇଁ
ସମ୍ପତ୍ତିଟି ହେଲା ମୂଳ
ସମ୍ପତ୍ତି ନଥିଲେ ସଂସାରୀ ଜୀବନ
ହୁଏ ସିନା କଳବଲ ।୫୦।

ହେଜି ଏ ସଙ୍କଟ ବିବାହ ବନ୍ଧନେ
ନଥିଲା ମୋର ପ୍ରୟାସ
ମାତ୍ର ପ୍ରାରବ୍ଧର କବଳୁ କି କେହି
ଲଭିଛି ହେଲେ ଖଲାସ ।୫୧।

କୁଟୁମ୍ବ ସୀମିତ କରିବାର ପାଇଁ
ଚାଲେ ଏ ଯୁଗେ ଯୋଜନା
ମୁଁ କିମ୍ବା ତାହାର ସୁଯୋଗ ନ ନେଲି
ବୋଲି ହୁଏ ଆଲୋଚନା ।୫୨।

କରି ଯାଗ ଯଜ୍ଞ		ପୂଜି ଦେବ ଦେବୀ
ନ ପାଇ ସନ୍ତାନଟିଏ
ବିକଳ ହୁଅନ୍ତି		କେତେ ଯେ ଦମ୍ପତି
ହିସାବ କେ ତାର ନିଏ ।୫୩।

ନଲୋଡ଼ି ସନ୍ତାନ		ଲଭନ୍ତି ଅନେକ
ପୋଷଣେ ନାହିଁ ଶକତି
ଆମରି ଇଚ୍ଛାରେ		ଚଳେ କି ଜଗତ
ଚଳେ କି ଆମ ନିୟତି ।୫୪।

କୁଟୁମ୍ବ ଯୋଜନା		କରିଅଛି ଯିଏ
ନ କରିଥିଲେ ସେ ତାହା
ସନ୍ତାନ ଜନମ		ନ ହେବାର ତାର
ବିଚାରେ ମୋ ମନ ଏହା ।୫୫।

ଯାହାକୁ ଯାହାଟି		ମିଳିବାର ଅଛି
ସ୍ୱପ୍ରାରବ୍ଧ ଅନୁଯାୟୀ
ମନୁଷ୍ୟ ଶକ୍ତି ତା		ଏଡାଇ ନ ପାରେ
ବିଶ୍ୱାସ ମୋ ଏଥିରେ ହିଁ ।୫୬।

ପ୍ରାରବ୍ଧ ପ୍ରଭାବେ		ସଂସାର ଜଞ୍ଜାଳେ
ହୋଇଗଲି ମୁହିଁ ଛନ୍ଦି
ବିତିଲା ଜୀବନ		ଦୁଃଖ ଅଭାବରେ
ହୋଇ ସଦା ଧନ୍ଦିବାନ୍ଧି ।୫୭।

ବିଭୁ କୃପାଙ୍କୁ		ବିପଦ ଆପଦ
ତୁଲାଇ ଆସିଛି ହେଲେ
ସନ୍ତାନେ ମୋହର		ଉଚ୍ଚଶିକ୍ଷା ପାଇ
ଜୀବନ ଯାପନ୍ତି ଭଲେ ।୫୮।

ଯାହା ଲଭିଛନ୍ତି		ସନ୍ତାନେ ମୋହର
ମୁଁ କି ତାହା ପାଞ୍ଚିଥିଲି
କିମ୍ବା ସେଥିପାଇଁ		ସାଧନ ଧରମ
କିଛି ମୁହିଁ କରିଥିଲି ।୫୯।

ଯାହାର ପ୍ରାରବ୍ଧ ଯେପରି ସେ ତାହା
ଅନାୟାସେ ପ୍ରାପ୍ତ ହୁଏ
ପିତା ମାତା ପରି ବେଶର କରଣୀ
ବୋଲି ଭ୍ରମ ଜନମାଏ ।୬୦।

(୫)

ସନ୍ତାନ ଲଭି ମୁଁ ବାପା ବୋଲାଇଛି
ସଂସାର ଜାଣିବା ପାଇଁ
ବାପର ମର୍ଯ୍ୟାଦା ରଖି ପାରିଛିକି
ବୋଲି ବସି ମୁଁ ଭାବଇ ।୬୧।

ବଡଲୋକ ସିନା ବାପ ହେବା ସାଜେ
ଗରିବକୁ ଏହା ଶଲ
ବାପ ହୋଇ ବାପ ମର୍ଯ୍ୟାଦା ନଥିଲେ
ଜୀବନଟି କଲବଲ ।୬୧।

ସନ୍ତାନେ ମୋହର ସୁବିଚାର ବନ୍ତ
ଦୋଷ ମୁଁ ନଦିଏ କାରେ
ମାତ୍ର ବିବେକ ମୋ ଦଂଶୁଅଛି ମୋତେ
କାହିଁପାଇଁ ମୁଁ ବାପରେ ।୬୩।

ଆଦାନ ପ୍ରଦାନ ଜଗତ ନିୟମ
ବାପ ପୁଅ କି ବାହାର
ଅଦିଆ ବାପକୁ ଜୀବନ ସାରା କି
କରିପାରେ କେ ଆଦର ।୬୪।

ମୋହପରି ବାପ ଜଗତେ ନଥିବେ
ଦାୟାଦକୁ ଯିଏ କିଛି
ନଦେଇ ଭୋଗଇ ଦାୟାଦ ଅର୍ଜନ
ଜୀବନ ତାହାର ଛି ଛି ।୬୫।

ଭାରିଜା ମୋହର ଅତି ଉଦାସୀନ
କି ବର୍ଣ୍ଣିବି ତାର ଗୁଣ

ଶୟନ ଭୋଜନ   ଛଡ଼ା ଆଉ କିଛି
ନ ଦିଶଇ ତାକୁ ପୁଣ ।୬୬।

ଅଭାବି ଜୀବନେ   ଦେଇନାହିଁ କେବେ
ବସ୍ତ୍ର ଅଳଙ୍କାର ମାନ
ବାସହୀନ ପୁଣି   ନିସମ୍ପତ୍ତି ଶେଷେ
ଅର୍ଜନ ଅକ୍ଷମ ଜନ ।୬୭।

ଭରଣ ପୋଷଣ   ପାଇଁ ପୁତ୍ରପରେ
ହେଲା ସେ ନିର୍ଭରଶୀଳା
ଏପରି ସ୍ୱାମୀକୁ   ସ୍ୱାମୀର ଆଦର
ଦିଏ ଭବେ କେଉଁ ବାଳା ।୬୮।

ପାଇନାହିଁ କେବେ   ଭାରିଜାଠୁ ମୁହିଁ
ସରାଗ ଆଦର ମାନ
ଛନ୍ଦ ଗନ୍ଧ ହୀନ   ଦାମ୍ପତ୍ୟ ଜୀବନ
ଏଣୁ ବିଚାରେ ମୋ ମନ ।୬୯।

ମାତ୍ର ସେଥିପାଇଁ   ନ ଦୋଷଇ ତାକୁ
ବିଚାରି ତା ସଦଗୁଣ
ସରଳ ନିଷ୍ପାପ   ଦେବ ଦ୍ୱିଜେ ଭକ୍ତି
ଆବିଳତା ହୀନ ମନ ।୭୦।

ନାତି ନାତୁଣି ମୋ   ଅତି ଛୋଟ ଯେଣୁ
ନ ପାରନ୍ତି କିଛି ଜାଣି
ଜେଜେ ଜେଜେ ବୋଲି   ଆଦରେ ଡାକନ୍ତି
ମୋ ହୀନତାକୁ ନ ଗୁଣି ।୭୧।

ତାଙ୍କ ସ୍ନେହ ଭକ୍ତି   ପ୍ରତିଦାନେ କେବେ
ଦେଇନାହିଁ ମୁହିଁ କିଛି
ଅଜ୍ଞାନ ଅବୋଧ   ଶିଶୁଙ୍କର ରଣୀ
ହେଉଛି ବୋଲି ଭାବୁଛି ।୭୨।
କିଛି ଦିନ ଅନ୍ତେ   ବଡ଼ ହୋଇଗଲେ
ବୁଝିବେ ଗୁଣ ଜେଜର

ଅକାମି ଅଯୋଗ୍ୟ ଢେଙ୍ଗଟାଏ ଏଯେ
ବୋଝ ବାପା ବୋଉଙ୍କର ।୭୩।

'କୁକି' ପରି ଖାଲି ଖାଆନ୍ତି ଶୁଅନ୍ତି
କାମ କିଛି ନ କରନ୍ତି
ଭଲ ମନ୍ଦ ଯେତେ ବେଳେ ଯାହା ଲୋଡା
ବାପା ବୋଉ କିଣିଦ୍ୟନ୍ତି ।୭୪।

ଘର ବାଡ଼ି ଧନ ସଂପତ୍ତି ୟାଙ୍କର
ନାହିଁ କିଛି କେଉଁଠାରେ
ଆମକୁ ଏ ପୁଣି ଦେବେ ବା କଅଣ
ଆମ ଭୋଗେ ଭାଗ କରେ ।୭୫।

ସେତେବେଳେ ଆଉ ରହିବ କି ଏହି
ପିଲା ଦିନର ସରାଗ
ସରାଗ ବଦଳେ ଅବଜ୍ଞାର ଭାବ
ନୋହିବ କି ମୋତେ ଭୋଗ ।୭୬।

ଝିଅ ଯୋଇଁ ନାତି ନାତୁଣୀଙ୍କ କଥା
ଅଳପରେ କହୁଅଛି
ଶ୍ୱଶୁର ସୁଲଭ କର୍ମ ନ କରି ମୁଁ
ଶ୍ୱଶୁର ବୋଲାଉ ଅଛି ।୭୭।

ଅଦିଆ ଯେଣୁ ମୁଁ ସରାଗ ସମ୍ମାନ
କଳ୍ପନାଟି ଅବାନ୍ତର
ଅଦିଆ ଲୋକ କି ଏ ଉଚ୍ଚ ବେଭାର
ଶୁଣିଛିକେ ପାଇବାର ।୭୮।

ଅଦିଆ କଥାଟି ଅକ୍ଷମତା ଜାତ
ଅନିଚ୍ଛାର ନାହିଁ ପ୍ରଶ୍ନ
ଏ ମହତ କଥା କିଏ ବା ବୁଝୁଛି
ଯାହାର ଯହିଁରେ ମନ ।୭୯।
ଝିଅ ବାପ ହୋଇ ନିସମ୍ଭଳି ହେବା
ଘୋର ପାପ ମୋ ବିଚାରେ

ଉଦ୍ଧାର ତହିଁରୁ ମିଳିବ କେବଳ
ଝିଅ ବିଭା ନ କରିଲେ ।୮୦।

ଝିଅ ଅଭିଆଡ଼ା ରଖିବା ଉତ୍ତମ
ନୁହେଁ ସମାଜ ନୀତିରେ
ଅତୁଆ ତୁଟିବ ଇଚ୍ଛା ବର ବିଭା
ନୀତି ପ୍ରଚଳିତ ହେଲେ ।୮୧।

ବିବାହ ବ୍ୟାପାରେ ପିତାମାତାଙ୍କର
ପ୍ରବେଶ ବିପଦ ମୂଳ
ଦିଆ ଅଦିଆର ତଉଲ ତାଉଲ
ବିଛାଏ ଜଞ୍ଜାଳ ଜାଲ ।୮୨।

ଧନୀ ଘରେ ବିଭା କରିଣ କିଏସେ
ଗର୍ବେ ନିଶ ମୋଡି ଚାଲେ
ସମ ଯୋଗ୍ୟ ହୋଇ ନିର୍ଦ୍ଧନେ ପଡ଼ିକେ
ଅନୁତାପାନଳେ ଜଳେ ।୮୩।

ବିବାହ ବ୍ୟାପାରେ ପୂର୍ଣ୍ଣ ସ୍ୱାଧିନତା
ପୁଅ ଝିଅ ଲାଭ କଲେ
ପିତା ମାତା ଅବା ବାହାର ଲୋକର
ପ୍ରରୋଚନା ନ ରହିଲେ ।୮୪।

ଦିଆ ଅଦିଆର ପ୍ରଶ୍ନ ନ ରହିବ
ଯାହା ମନ ଯା'କୁ ପାଏ
ମନ କାରବାରେ ଧନ ସମ୍ପତ୍ତିର
ବିଚାର କି ଆଉ ରହେ ।୮୫।

ନିସମ୍ପତ୍ତି ହୋଇ ଝିଅ ବିଭା କଲି
ପ୍ରଚଳିତ ନୀତି ମାନି
ଜାଣିକି ଥିଲି ମୁଁ ନିର୍ଦ୍ଧନ ଶ୍ୱଶୁର
ହୁଏ ବଡ଼ ହିନିମାନି ।୮୬।
ଜାଣିଥିଲେ କି ମୁଁ ଏଡାଇ ପାରନ୍ତି
ନିୟତି ଅନୁଶାସନ

ଯାହା ପାଇଁ ଯାହା ଖଞ୍ଜା ଅଛି ତାହା
ଅବଶ୍ୟ ହୁଏ ଫଳନ ।୮୭।

ନିସ୍ତାର ଯହିଁରୁ ନାହିଁ ତାହାପାଇଁ
କିମ୍ପାଇଁ କରିବ ଦୁଃଖ
ଦୁଃଖ ପାଇଁ ଦୁଃଖ କଲେ ତାହା କେବେ
ପାଲଟି ଯାଏ କି ସୁଖ ।୮୮।

ଜୀବନ ସୁଗମ କରିବାର ପାଇଁ
ବିଭୁ ଭକ୍ତିଟି ହିଁ ସାର
ଅନ୍ୟ ଯାହାସବୁ କ୍ଷଣିକ ସୁଖର
ଅଟନ୍ତି ମାତ୍ର ଆଧାର ।୮୯।

ଝିଅ ଯୋଇଁ ମୋର ଅବଶ୍ୟ ବୁଝିବେ
ଏ ନିୟମ କରାମତି
ବିଭୁ ପଦେ ଭକ୍ତି ରଖି ଶାନ୍ତିମୟ
କରିବେ ଜୀବନ ଗତି ।୯୦।

ବୋହୂ ଦୁଇଟିମୋ ଅତି ସୁଲକ୍ଷଣୀ
ଭକ୍ତିମତୀ ଚାରୁଶୀଳା
ସ୍ୱଜନରେ ପ୍ରୀତି କର୍ତ୍ତବ୍ୟ ପାଳନେ
ନ କରନ୍ତି କେବେ ହେଳା ।୯୧।

ପ୍ରାପ୍ୟରୁ ଅଧିକ ସ୍ନେହ ଭକ୍ତି ମୋତେ
ଦେଇଥାନ୍ତି ସରାଗରେ
ଉପଜୀବି ବୋଲି ହେୟଭାବ ତାଙ୍କ
ଆସିନାହିଁ ମୋ ଗୋଚରେ ।୯୨।

ମନୁଷ୍ୟର ମନ ଗହନ ଗହଳ
କେ ପାଇବ ତାର ଅନ୍ତ
ମନ ଅନ୍ତରାଳେ ଉଙ୍କି କି ନମାରେ
ମୋ ହୀନତାର ବୃତ୍ତାନ୍ତ ।୯୩।
ନିଜ ପୁଅ ଝିଅ ନୁହନ୍ତି ବିମୁକ୍ତ
ମୋ ବିଷୟେ ଏ ଭାବରୁ

ପରଚ୍ଛିଏ ଅବା କିପରି ଛାଡିବେ
ଏ ଭାବ ତାଙ୍କ ମନରୁ ।୯୪।

ଯୋଗାଣୁ ଚାହିଦା ଅଧିକ ଯେଠାରେ
ଜୁଲମ ଜିଗର ଥାଇଁ
ସଙ୍କଟ ସଂଘର୍ଷ ଅବାଧରେ ସେଠି
ରଚିଥାନ୍ତି ଲୀଳାବୃନ୍ଦେଁ ।୯୫।

ଏ ଉପଦ୍ରବକୁ ଏଡାଇବା ପାଇଁ
ସଦା ମୁଁ ଥାଏ ସଜାଗ
ଚାହିଦା କି ଅବା ଜୁଲମ ଜିଗର
ମନୁ କରିଥାଏ ତ୍ୟାଗ ।୯୬।

(୬)

ଗାଆଁରେ ସାଇରେ ଭାଇରେ ବନ୍ଧୁରେ
ଯେବା ମୋତେ ଜାଣିଅଛି
ସମ୍ମାନ ଦେଇତ କେହି ପଦେ କଥା
କେବେ ମୋତେ ନ କହିଛି ।୯୭।

ସାହାଯ୍ୟ ଦେବାର ଶକ୍ତିଯାର ଥାଇ
ତା ପାଖରେ ସିନା ଧାଡ଼ି
ଲଗାନ୍ତି ଆଶାୟୀ ଫଳାଫଳ କଥା
ତିଳେ ବିଚାର ନ କରି ।୯୮।

ନିଜକୁ ପ୍ରତିଷ୍ଠା ନ କରିଛି ଯିଏ
ବାସହୀନ ହୋଇ ରହେ
ଅଯୋଗ୍ୟ ଅକ୍ଷମ ଅକିଞ୍ଚନ ଲୋକ
ତା ପାଖକୁ କିଏ ଯାଏ ।୯୯।

ବାହାର କଥା ତ ଗହନ ବ୍ୟାପାର
ନିଜ ପରିବାର ଦେଖ
ସେମାନେ କି ମୋତେଅନ୍ୟଥା ଭାବନ୍ତି
ମୂଲ୍ୟ ଦିଅନ୍ତି ଅଧିକ ।୧୦୦।

କି ତ୍ରୁଟି ରହିଛି ବ୍ୟକ୍ତିତ୍ୱରେ ମୋର
ଜାଣିତ ପାରିଲି ନାହିଁ
ଅନ୍ତରର ଭାବ ମୁହଁରେ ମୋହର
କି କାରଣେ ନ ଫୁଟଇ ।୧୦୧।

ଶୁଷ୍କ କାଷ୍ଠ ତୁଲ୍ୟ ଜ୍ୟୋତିହୀନ ମୁଖ
ଆକର୍ଷଣେ ଅପାରଗ
ବାଧ ନ ହୋଇଲେ ସମ୍ମାନ ଦେବାକୁ
ନ ଦେଖାଏ କେ ସରାଗ ।୧୦୨।

(୭)

'ଗୀତା ସୁଧାସାର' ବହିଟି ଛପାଇ
ବାନ୍ଧିଥିଲି ଆଶା ମନେ
ସନ୍ତାନମାନେ ମୋ ଉତ୍ସାହିତ ହେବେ
ଆନନ୍ଦେ ଗୀତା ପଠନେ ।୧୦୩।

'ଗୀତା' ପାଠ କଥା ଦୂରେ ଥାଉ ଗୀତା
ସୁଧାସାର ନ ପଢ଼ିଲେ
ହୀନଜନ ଲେଖା ହୀନ ବୋଲି ପରା
ମନେ ମନେ ଭାବିନେଲେ ।୧୦୪।

ହୀନ ହୋଇ ମୁହିଁ ସେ ମହାଭାବର
ପ୍ରଚାରେ କଲି ସାହସ
ଅମହତ ଜନ ମହତ କାମ କି
କଲେ ହୁଏ ତାର ଦୋଷ ।୧୦୫।

ମହତ କଥାର ମହତ ପଣିଆ
କେବେ କ୍ଷୟ ହୁଏ ନାହିଁ
ବରଂ ଅମହତ ବୋଲାଏ ମହତ
ତାହାର ସଂସ୍ପର୍ଶ ପାଇ ।୧୦୬।
ମାତ ଆମ ଦେଶେ ରହିଛି ଚଳଣି
ମହତ ଜନର କଥା

ଶୁଣିବାରେ ଲୋକେ ଆଗ୍ରହୀ ହୁଅନ୍ତି
ନ ବିଚାରି ତା ସାରତା ।୧୦୭।

ଏହି ଦୃଷ୍ଟିରୁ କି ସନ୍ତାନେ ମୋହର
ହେୟ କଲେ ମୋର ବହି
ଯେହେତୁ ଅଜ୍ଞାନୀ ସ୍ୱଳ୍ପବିଦ୍ୟ ବୋଲି
ସୁବିଦିତ ମୁଁ ଅଟଇ ।୧୦୮।

(୮)

ଧନମାନ ଯଶ ବିଦ୍ୟା ଆଉ ବୃତ୍ତି
ସବୁଥିରେ କଲ ହୀନ
ହୀନମନ୍ୟ ତାର ଗନ୍ତାଘର ମୋତେ
କରିଛ ହେ ଭଗବାନ ।୧୦୯।

ହୀନତା କାହାଣୀ କେତେ ବଖାଣିବି
ହୀନତା ତ ଅସୁମାର
ଯେତେ ନିଖାରିଲେ ସେତେ ବାହାରିବ
ଶେଷ ନ ହେବ ଲେଖାର ।୧୧୦।

ପ୍ରାରବ୍ଧ ପ୍ରଭାବ ଅତି ବଳଶାଳୀ
ସୁଖ ଦୁଃଖର କାରଣ
ଉଦ୍‌ଯୋଗୀ ଜନଟି ଉଦ୍‌ଯୋଗ ବଳରେ
କରେ ଉନ୍ନତି ବିଧାନ ।୧୧୧।

ମୋ ଘଟଣାବଳୀ ଶିଖାଇଛି ମୋତେ
ଏ ଗୁଢ଼ ତତ୍ତ୍ୱର କଥା
ଉଦ୍ୟମ ବିହୀନ ଯେଣୁ ମୁଁ ଅଟଇ
ବରି ନେଇଛି ହୀନତା ।୧୧୨।

ଏ ହୀନ ଶରୀର ଧରିବାକୁ ଆଉ
ମନରେ ନାହିଁ ଆଶୟ
ବିଭୁପଦେ ଅଜି ଏତିକି ମାତର
ଶୀଘ୍ର ହେଉ ଯାର ଲୟ ।୧୧୩।

ଦେହ ଲୟ ସାଙ୍ଗେ ହୀନତା କାହାଣୀ
ଲୁଚିବ ନାମ ସହିତ
ଦାୟାଦେ ମୋହର ମୋ ହୀନତା ପାଇଁ
ନୋହିବେ ଆଉ ଲଜ୍ଜିତ ।୧୧୪।

ଉଚ୍ଚାସନେ ଥାଇ ନୀଚରୁ ଉଦ୍ଭବ
କଥା ମନକୁ ବାଧଇ
ଉଚ୍ଚ ଗଉରବ ନୀଚ ହେତୁ ପାଇଁ
ନିଉନ କି ନ ହୁଅଇ ।୧୧୫।

ଜୀବନ ମୋହର ଏ ନିଉନତାକୁ
ପ୍ରକଟିଥାଏ ପ୍ରଖରେ
ଏ ପାଇଁ ବିଲୟ ଶୀଘ୍ର ହେଉ ମୋର
କାମନା କରେ ମନରେ ।୧୧୬।

ବହୁ ଆଡ଼ମ୍ବରେ ଅନେକ ଦାୟାଦ
ଶୁଦ୍ଧି କ୍ରିୟା ସମ୍ପାଦନ୍ତି
ଲବ୍ଧ ସଂପତ୍ତିର ଭାଗମାତ୍ର ସାରି
ଜ୍ଞାତି କୁଟୁମ୍ବେ ତୋଷନ୍ତି ।୧୧୭।

ନିଃସମ୍ପତ୍ତି ମୁହିଁ ଦାୟାଦେ ମୋହର
ନ ଲଭିବେ କିଛି ଧନ
ସ୍ୱାର୍ଜିତ ଧନରୁ ଶୁଦ୍ଧିକ୍ରିୟା ଖର୍ଚ୍ଚ
କରିବାକି ସମିଚୀନ ।୧୧୮।

ଶବଦାହ ଛଡ଼ା ଭୋଜି ଭାତ କ୍ରିୟା
ମୋ ବିଚାରେ ବର୍ଜନୀୟ
ସ୍ମରଣ ରଖିବେ ଦାୟାଦେ ମୋହର
ମୋହର ଏ ଅଭିପ୍ରାୟ ।୧୧୯।

କେବେ କେଉଁଠାରେ ଛାଡ଼ିବ ଜୀବନ
ପ୍ରାଣୀ ତା ନପାରେ ଜାଣି
ସ୍ୱସ୍ଥାନରୁ ଦୂରେ ବିଭିନ୍ନ ସ୍ଥାନରେ
ନିବାସ ମୋହର ପୁଣି ।୧୨୦।

ଜ୍ଞାତିଙ୍କ ସହିତ ଭୋଜି ଭାତ କ୍ରିୟା
ସମ୍ଭବଟି ହେବ ନାହିଁ
ଅନ୍ୟସ୍ଥାନେ ଏହା ସମ୍ପନ୍ନ କରିବା
ନିରର୍ଥକ ମୁଁ ଭାବଇ ।୧୨୧।

ଏଣୁ ଏ କ୍ରିୟାଟି ବର୍ଜନୀୟ ବୋଲି
କହିଲି ମୁଁ ଭାବିଚିନ୍ତି
ଦାୟାଦେ ମୋହର ଖଣ୍ଡ ନ ବୁଝିବେ
ମୋହର ଏ ଖୋଲା ଉକ୍ତି ।୧୨୨।

ସବୁ କ୍ଷେତ୍ରରେ ମୁଁ ବିଫଳ ହୋଇଛି
ବିଫଳତାର ପ୍ରତୀକ
କ୍ଷଣକ ପାଇଁ ତ କାହାରି ମନରେ
ସଞ୍ଚାରି ନାହିଁ ପୁଲକ ।୧୨୩।

ପୁଲକ ସଞ୍ଚାର ହୁଅଇ କି ଖାଲି
ସମ୍ବନ୍ଧକୁ ଆଶ୍ରା କଲେ
ସମ୍ବନ୍ଧରୁ ସ୍ନେହ ସରାଗ ନ ଝରେ
ମାଧ୍ୟମ ଆଶ୍ରା ନଥିଲେ ।୧୨୪।

ଯାହାର ମୋଠାରୁ ଯାହା ପାଇବାର
ପାଇଛି କି ସିଏ କେବେ
କିପରି କେଉଁଠୁ ଯାହା ପାଇବାର
ପାଇଛି କି ସିଏ କେବେ
କିପରି କେଉଁଠୁ ସେନେହ ଝରିବ
ବୁଝୁ ନାହିଁ କି ମୁଁ ଏବେ ।୧୨୫।

ବାପ ହୋଇ ବାପ ମର୍ଯ୍ୟାଦାତ ନାହିଁ
ଶ୍ୱଶୁର ହିସାବେ ହୀନ
ସ୍ୱାମୀ ହିସାବରେ ପରିତ୍ୟକ୍ତ ଯାହା
ନହୋଇ କାଟିଛି ଦିନ ।୧୨୬।
ନାତି ନାତୁଣୀଙ୍କ ପାଖରେ ମୁଁ ସଦା
ନୁହଇ କି ରିକ୍ତ ହସ୍ତ

ସମ୍ବନ୍ଧ ସୂତ୍ରର		କେତେ ଦିନ ଆଉ
ଆକର୍ଷିତ ତାଙ୍କ ଚିତ୍ତ ।୧୨୭।

ସାଇ ପଡ଼ିଶାଙ୍କ		ସାଙ୍ଗରେ ମୁଁ କେବେ
ମିଳାମିଶା କରି ନାହିଁ
ଭଲରେ ମନ୍ଦରେ		ଭରସା ଦେଇ ତ
କଥା ପଦେ କହି ନାହିଁ ।୧୨୮।

ବନ୍ଧୁ ବାନ୍ଧବରେ		ଯୋଗାଯୋଗ ମୋର
ଶୂନ୍ୟରୁ ଆହୁରି ଊଣା
କିପରି ମିଳିବ		ସେନେହ ସରାଗ
ମିଳଇ କି ତା ମାଗଣା ।୧୨୯।

ଏପରି ଜୀବନ		ଜନ ସମାଜରେ
ଧରିବାକୁ ଲାଗେ ଲାଜ
ଜନ ଅନ୍ତରାଳେ		ବଣ ଜଙ୍ଗଲରେ
ଦାସ ମୋହପାଇଁ ସଜ ।୧୩୦।

ସଂସାରୀ ହୋଇ ମୁଁ		ସଂସାରୀ ସୁଲଭ
କର୍ମ ଯଦି ନ କରିବି
କାହିଁକି ସଂସାରେ		ମନ ମରା ହୋଇ
ଦୁଃଖେ ଦିନ କଟାଇବି ।୧୩୧।

କୁଆଡ଼େ ଯିବି ମୁଁ		କିପରି ରହିବି
ବୋଲି ଭାବେ ସଦାବେଳେ
ରୋଗ ଯନ୍ତ୍ରଣାର		କଥା ମନେପଡ଼ି
ମନକୁ ଦୁର୍ବଳ କରେ ।୧୩୨।

ପୁଣି ଭାବେ ବସି		ରୋଗ ଆଶଙ୍କାରେ
ଆତଙ୍କିତ ହୋଇ ଯେବେ
ମନ ଲୋଡୁଥିବା		ପଥ ମୁଁ ତେଜିବି
, ଅବିବେକି ହିଁ ବୋଲିବେ ।୧୩୩।
ରୋଗ ଯନ୍ତ୍ରଣା ତ		ଦେହର ସ୍ୱଭାବ
ରୋଗକୁ କିମ୍ପାଇ ଡ଼ର

ରୋଗ ତତ୍ତ୍ୱ ଜଣା　　ଜ୍ଞାନୀ ଲୋକ କେବେ
　　ରୋଗେ ନହୁଏ ଅଧୀର ।୧୩୪।

ଯେତେ ପୁଣ୍ୟବନ୍ତ　　ହେଲେ ହେଁ ମାନବ
　　ଶରୀର ଯନ୍ତ୍ରଣା ଭୋଗେ
ରୋଗରୁ ହେଉ ବା　　ଆଘାତରୁ ହେଉ
　　ଶରୀରେ ବିକାର ଜାଗେ ।୧୩୫।

ପଞ୍ଚଭୂତେ ଗଢ଼ା　　ପ୍ରାଣୀର ଶରୀର
　　ଷଡ଼ ବିକାର ଅଧୀନ
ବିଭିନ୍ନ ଲକ୍ଷଣ　　ବିଭିନ୍ନ ଯନ୍ତ୍ରଣା
　　ଅଟେ ବିକାରର ଗୁଣ ।୧୩୬।

ସମ୍ପୂର୍ଣ୍ଣ ନିଷ୍ପାପ　　ପୂର୍ଣ୍ଣ ପୁଣ୍ୟବନ୍ତ
　　ହୋଇ ନ ପାରେ କେ ପ୍ରାଣୀ
ଯେପରି ସଂସ୍କାର　　ସେପରି ଶରୀର
　　ଲଭିଥାଏ ପ୍ରାଣୀ ପୁଣି ।୧୩୭।

ପାପ ପୁଣ୍ୟ ମିଶା　　ଗଢ଼ା ଏ ଶରୀର
　　ଭେଦ କେବଳ ମାତ୍ରାର
ମୁନି ଋଷି ମଧ୍ୟ　　ଦେହ ଯନ୍ତ୍ରଣାରୁ
　　ଲଭନ୍ତି ନାହିଁ ନିସ୍ତାର ।୧୩୮।

ପାପ ଭାଗ ଯହିଁ　　ଅଧିକ ସେଠାରେ
　　ଅଧିକ ଯନ୍ତ୍ରଣା ସାର
ଧୈର୍ଯ୍ୟଧରି ସହ୍ୟ　　କରନ୍ତି ଜ୍ଞାନୀଏ
　　ଅଜ୍ଞାନୀଏ ହରବର ।୧୩୯।

ବିଭୁଙ୍କ ବିଭୂତି　　ସ୍ୱରୂପ ଔଷଧ
　　ପ୍ରୟୋଗରେ ଉପଶମ
ମିଳେ ମାତ୍ର ତାହା　　ସମ୍ପୂର୍ଣ୍ଣ ନିରୋଧେ
　　ନହୁଅଇଟି ସକ୍ଷମ ।୧୪୦।

ଶରୀର ଅଟଇ ରୋଗ ଜନ୍ମ ସ୍ଥାନ
ଏଣୁ ରୋଗ ଭୂ ବୋଲାଏ
ଯାବତ ବିଲୟ ନ ହୋଇଛି ଯାର
ରୋଗର ଆଶଙ୍କା ଥାଏ ।୧୪୧।

ରୋଗ ଦେଇ ରୋଗ ନିବାରଣ ପାଇଁ
ଔଷଧ ଯେ ତିଆରିଲେ
ମନୁଷ୍ୟ କି କ୍ଷମ ସେ ମାୟା ରହସ୍ୟ
ଭେଦିବାକୁ ଏଡ଼େ ହେଲେ ।୧୪୨।

ଏଣୁ ରୋଗଚିନ୍ତା ପରିହରି ମନୁ
ବିଭୁ କରୁଣାରେ ଆସ୍ଥା
ରଖି ନିର୍ଭୟରେ ସ୍ୱପଥେ ଗମିବା
ଜ୍ଞାନୀ ମାନଙ୍କର କଥା ।୧୪୩।

ବୁଝି ଏହିନୀତି ଧୈର୍ଯ୍ୟ ଅବଲମ୍ବି
ଆଶାୟୀ ହୋଇ ରହିଛି
ଅନ୍ତର୍ଯ୍ୟାମୀ ପ୍ରଭୁ ଅନ୍ତର ବୁଝି ମୋ
ବାଟ ବତାଇବେ ବାଛି ।୧୪୪।

ଆସିବ ସୁଯୋଗ ଦିଶିଯିବ ବାଟ
ଛିଣ୍ଡିବ ସଂଶୟ ଡୋର
ବିଭୁ କରୁଣାରେ ଅପାର ମହିମା
ବୁଝିବି ମୁଁ କିବା ଛାର ।୧୪୫।

ଚଉଦ ବରଷ ଅତିକ୍ରାନ୍ତ ଏବେ
ସ୍ଥିତିରେ ନାହିଁ ବର୍ତ୍ତନ
ମଣିଷ ଭାବନା ବିଧାତା କରଣୀ
ହୋଇ ନଥାଏ ସମାନ ।୧୪୬।

ଯା ହବାକୁଥାଏ ଅବଶ୍ୟ ହୁଅଇ
ଯାହା ନ ହେବାର କେବେ
ସମ୍ଭବି ନଥାଏ ଏଭାବେ ନିଶ୍ଚିତେ
ଚିନ୍ତା ନ ଲାଗଇ ଲବେ ।୧୪୭।

ଏ ଭାବରେ ମନ ହେଲାଣି ତଲ୍ଲୀନ
ଅବଶିଷ୍ଟ ଆୟୁକାଳ
ଚିନ୍ତାହୀନ ହୋଇ କଟିଯିବ ବୋଲି
ମନରେ ଆସୁଛି ବଳ ।୧୪୮।

ଯେଉଁ ଶ୍ଳୋକରୁ ଏ ଭାବଟି ସ୍ଫୁରିତ
କଲି ତା ଅତ୍ର ଉଦ୍ଧାର
ପ୍ରଭାବରେ ଯାର ସଭିଙ୍କ ମନରୁ
ଚିନ୍ତା ଦକ ହେଉ ଦୂର ।୧୪୯।

ଶ୍ଳୋକ
ଯଭାବି ତଭବତ୍ୟେବ
ଯଦଭାବ୍ୟଂ ନ ତଭଦେତ୍
ଇତି ନିଶ୍ଚିତ ବୁଦ୍ଧିନାଂ
ନ ଚିନ୍ତା ବାଧତେ କ୍ୱଚିତ୍।

## ।। ଅକାର ।।

(ସବୁକଥା ବିଚାରକୁ 'ଅକାର' ହେଉଛି ଭଗବାନଙ୍କ ପାଇଁ ସାର୍ଥକ ଉପାୟ)

ନାମ ସିନା ରାମ ହୋଇଅଛି ମୋର
ନୁହେଁ ମୁଁ ପ୍ରକୃତ ରାମ,
ରାମ ଗୁଣ କାହୁଁ ଆସିବ ମୋ ଠାରେ
ଅଟଇ ମୁଁ ନରାଧମ ।୧।

ଗୁଣକୁ ଚାହିଁତ ମଣିଷର ନାମ
ହୁଏ ନାହିଁ ଧରା ତଳେ,
ଜନମ ବେଳରେ ବାପା ମାଆ ନାମ
ଦେଇଥାନ୍ତି ଶ୍ରଦ୍ଧା ବଳେ ।୨।

ଜନମ ବେଳରେ ଗୁଣ ଗ୍ରାମ କିଛି
ପଡ଼ି ନଥାଏ ତ ଜଣା,
ନାମ ସହ ଲୋକ କ୍ରିୟା କଳାପକୁ
ଗଣିଲେ ହୋଇବ ବଣା ।୩।

'ପଦ୍ମ ଲୋଚନ' ନାମ ବହିଥାନ୍ତି
କେତେ କେତେ ଅନ୍ଧନର,
ପାଦ, ପାଣି ଯାର ବିକଳ ସେ ପୁଣି
ନାମ ବହିଥାଏ ବୀର ।୪।

ବଡ଼ ହୋଇଗଲେ ପ୍ରତିଷ୍ଠା ପାଇଲେ
ଲଭନ୍ତି କେତେ ଉପାଧି,
ପଦ୍ମଶିରୀ ଠାରୁ ଭାରତ ରତନ
ଅଟେ ଏହାର ପରିଧି ।୫।

ଗୁଣ, କୀର୍ତ୍ତି, ଯଶ ତଉଲା ହୋଇଣ
ଦିଆ ହୁଅଇ ଉପାଧି,
ନାମ ଯାହା ଥାଉ ଉପାଧି ବଳରେ
ଲାଭ କରନ୍ତି ପ୍ରସିଦ୍ଧି ।୬।

ଉପାଧିଟି ହେଲା ପ୍ରକୃତ ଗୁଣର
ଉପଯୁକ୍ତ ପରିଚୟ,
ଉପାଧି ନଥିଲେ ନାମ ଥାଇ ମଧ
ବୋଲନ୍ତି ଅନାମଧେୟ ।୭।

ପ୍ରଭୁ ପରାତ୍ପର ଏହିପରି କେତେ
ନାମତ ଅଛନ୍ତି ବହି,
କିଏ ତାଙ୍କୁ ଏହି ନାମ ସବୁ ଦେଲା
ବୁଝିତ ପାରଇ ନାହିଁ ।୮।

ନାହିଁ ବାପ ମାଆ ତାଙ୍କର ସିଏତ
ସମସ୍ତଙ୍କ ବାପ ମାଆ,
ଅଜ, ଅକାରଣ ବୋଲାନ୍ତି ସିଏତ
ସର୍ବତ୍ର ତାଙ୍କର ଠାଆ ।୯।

ମାଆ ନାହିଁ ଯାର ନାଆଁ ନାହିଁ ତାର
ଏକଥା ଆମକୁ ଜଣା
ଯେତେ ଯେତେ ନାମ ବିଷ୍ଣୁଙ୍କର ଅଛି
ନୁହେଁ ତା ନାମରେ ଗଣା ।୧୦।

ଅଜ ହେବାରୁ ସେ ଅନାମ ଅଟନ୍ତି
ମାତ୍ର ଉପାଧିରେ ଭରା,
ଯେତେ ଯେତେ ନାମେ ଡାକୁ ତାଙ୍କୁ ଆମେ
ସେ ସବୁ ଉପାଧି ପରା ।୧୧।

ହଜାରେ ହଜାରେ ଉପାଧି ବହିଛ
ଅଗଣନ ତୁମ ଗୁଣ,
ଉପାଧି ଦାତାଙ୍କୁ ଜଣାଥିବ ସିନା
ନ ପଶେ ଆମର ଜ୍ଞାନ ।୧୨।

ଗୁଣ କର୍ମ ଦେଖି ଉପାଧି ଦେବାର
ଅଛି ଯେଉଁ ପରମ୍ପରା,
ତୁମ କ୍ଷେତ୍ରେ ତାହା ପାଳିତ ହେବାର
ଜଣା ପଡୁନାହିଁ ପରା ।୧୩।

ଉପାଧି ଦାତାଙ୍କୁ ଲାଞ୍ଚ ଦେଇ ଅବା
ଅନ୍ୟ ଉପଚାର କରି,
ଉପାଧି ଲଭିଛ ବଡ଼ ବୋଲାଇଛ
ଧନ୍ୟ ତୁମର ଚାତୁରୀ ।୧୪।

ହାଣ୍ଡିରୁ ଗୋଟିଏ ଚିପନ୍ତି ବୋଲିତ
ରହିଛି ଆମର କଥା,
ହଜାରେ ଉପାଧି ଭିତରୁ ଗୋଟିଏ
ପରଖି ଲାଗୁଛି ବ୍ୟଥା ।୧୫।

ଗୋଟିକ ଯେପରି ସମସ୍ତ ସେପରି
ନାହିଁ ସନ୍ଦେହ ଏଥିରେ,
ସମସ୍ତ ଉପାଧି ଭେଜାଲ ବୋଲିହିଁ
ପ୍ରତ୍ୟୟ ଜାଗେ ମନରେ ।୧୬।

ଉପାଧି ବହିଛ 'ଦୀନବନ୍ଧୁ' ମାତ୍ର
ଦୀନଙ୍କୁ ଅନାଅ ନାହିଁ,
ଦୀନର ବିକଳ ଡାକ ତୁମ କାନେ
ପ୍ରବେଶ କରଇ ନାହିଁ ।୧୭।

ଦୁଃଖ ପରେ ଦୁଃଖ ଭୋଗୁଥାଏ ସିଏ
ତୁମକୁ ବାଧଇ ନାହିଁ,
ଗୁଣ ନାହିଁ ଖାଲି ଉପାଧି ନେଇଛ
ଆମକୁ ଭଣ୍ଡିବା ପାଇଁ ।୧୮।

ବନ୍ଧୁ କ'ଣ କେବେ ବନ୍ଧୁର ଦୁଃଖରେ
ରହିପାରେ ହୋଇ ସ୍ଥିର,
ବନ୍ଧୁ ଦୁଃଖ ଦୂର କରିବା ପାଇଁ ସେ
ନିଶ୍ଚେ କରେ ପ୍ରତିକାର ।୧୯।

ତୁମେ କେଉଁ ଦୀନ    ଦୁଃଖ ନାଶିବାର
ଶୁଣାନାହିଁ ଏ ଯାବତ,
ମିଛେ ଦୀନବନ୍ଧୁ    ଉପାଧି ବହିଛ
କହିବା କି ଅସଙ୍ଗତ ?  ।୨୦।

ଭକତ ବତ୍ସଳ    ଉପାଧି ବହିଛ
ଭକ୍ତ ଜାଣେ ତୁମ ଗୁଣ;
ନିଶାରେ ତୁମକୁ    ଭଜୁଥାଏ ସିନା
ପାଇବାଟି ଅଟେ ଶୂନ  ।୨୧।

ଉପାଧି ନ ହୋଇ    ନାମ ହୋଇଥିଲେ
ଦୋଷତ ହୁଅନ୍ତା ନାହିଁ,
ନାମ ଅନୁସାରେ    ଗୁଣ ନ ହୋଇବା
ଆଗରୁ କହି ଅଛଇ  ।୨୨।

ଉପାଧି ଗୁଡ଼ିକ    ନିରର୍ଥକ ବୋଲି
ହେଲା ଏବେ ପ୍ରମାଣିତ,
ଉପାଧି ରହିତ    ଗୁଣକର୍ମ ଶୂନ୍ୟ
ବୋଲିବା ହେବ ଉଚିତ  ।୨୩।

ଉପାଧିରେ ଯଦି    ସଉକ ତୁମର
ଗୁଣ କର୍ମ ଦେଖି ଘେନ,
'ଅକାର' ହୋଇଲେ  ଠିକଣା ହୋଇବ
ବୋଲି ଭାବୁଛି ମୋ ମନ  ।୨୪।

କିଛି ନ କରିବା    ଅଭ୍ୟାସ ତୁମର
'ଅକାର' ଉପାଧି ନିଅ,
ଆମ କର୍ମଫଳ    ଭୋଗୁଥାଉ ଆମେ
ତୁମେ ବସି ଚାହିଁଥାଅ  ।୨୫।

## ॥ ମାୟା ॥

(ମାୟା ବା ପ୍ରକୃତି ଭଗବାନଙ୍କ ଶକ୍ତି। ମାୟାଦ୍ୱାରା ଜଗତ ଆତଯାତ ହେଉଛି। ଭଗବାନ ଉଦାସୀନ ଦ୍ରଷ୍ଟା ସ୍ୱରୂପ ବିଦ୍ୟମାନ)

ମାୟାଧର ପ୍ରଭୁ ମାୟା ବିସ୍ତାରିଛ
ମାୟାକୁ ଦେଇଛ କରଣୀ,
ଭଙ୍ଗା ଗଢ଼ା ଆଦି ସକଳ କର୍ମରେ
କରିଛ ତାହାକୁ ଅଗ୍ରଣୀ
ଆହେ ମାୟାଧର।
ଏକି ଅଟଇ ଠିକଣା ବ୍ୟବହାର ? ।୧।

ମୂକ ହୋଇ ନିଜେ ସାକ୍ଷୀ ସାଜିଅଛ
କାହିଁରେ ନଦିଅ ହାତ,
ତୁମ ବଳ ପାଇ ମାୟା କରୁଅଛି
ଜଗତକୁ ଆତଯାତ
ଆହେ ମାୟାଧର।
ତୁମ ଉଦାସୀନତା କି ସୁବିଚାର ? ।୨।

ମାୟା କବଳରେ ପଡ଼ି ପ୍ରାଣୀ ବର୍ଗ
ଭୋଗନ୍ତି ଅଶେଷ ଯାତନା
ଜନ୍ମ, ମୃତ୍ୟୁ, ଜରା, ରୋଗ, ଶୋକ ଆଦି
କରିବ କିଏ ତା କଳନା
ଆହେ ମାୟାଧର।
ସମର୍ଥ କିଏ ତା ରୋକିବାର ? ।୩।

ତା ସାଙ୍ଗକୁ ପୁଣି କାମ, କ୍ରୋଧ, ଲୋଭ
ସାଜି ସହରେ ମାୟାର,
ଧର୍ମ ପଥରୁତ ଦୂରେଇ ନିଅନ୍ତି
କଷଣ ଦିଅନ୍ତି ଅପାର
ଆହେ ମାୟାଧର
ଏହା ହୁଏକି ତୁମକୁ ସୁଖକର ? ।୪।

ମାୟା ଆବରଣେ ଲୁଚି ରହ ତୁମେ
ପ୍ରାଣୀତ ନଦେଖେ ତୁମକୁ
ତୁମେ କିନ୍ତୁ ସବୁ ଦେଖୁଥାଅ ପ୍ରଭୁ
କାହିଁରେ ନ ଦିଅ ମନକୁ
ଆହେ ସର୍ବଦ୍ରଷ୍ଟା
ତୁମ ଦୟା ବିନା ସିନା ପ୍ରାଣୀ ଭ୍ରଷ୍ଟା ।୫।

ତୁମ ଦରଶନ ତୁମ ଇଚ୍ଛା ବିନା
ନହଟେ ମାୟାର ଯାତନା
କିପରି କାଟିବି ମାୟାଜାଲ ପ୍ରଭୁ
କରି ନପାରେ ମୁଁ କଳ୍ପନା
ଆହେ ଇଚ୍ଛାମୟ
ଇଚ୍ଛାକର ହଟିଯାଉ ଦୁଃଖଚୟ ।୬।

ତୁମକୁ ଭଜିଲେ ତୁମକୁ ଜପିଲେ
ତୁମଠାରେ ମନ ଥାପିଲେ
ଖୁସୀହୋଇ ତୁମେ ଦରଶନ ଦିଅ
ମାୟା ଘୁଞ୍ଚିଯାଏ ସହଳେ
ଆହେ ମାୟାଧର
ଭକ୍ତ ପାଇଁ ପରା ଅଟ ମୁକ୍ତକର ।୭।

ଯାତନା କଂକାଳ ବନ୍ଧନାଦି ଯେତେ
ସମସ୍ତ ହୁଅଇ ତ ଦୂର
ନିତ୍ୟାନନ୍ଦ ସୁଖ ବିରାଜ କରଇ
କହନ୍ତି ଯେ ଶାସ୍ତ୍ରକାର
ଆହେ ଜ୍ଞାନମୟ
ଜ୍ଞାନ ଦାନେ ନାଶ କର ଭବଭୟ ।୮।

ହେତି ଶାସ୍ତ୍ରବାଣୀ ପୂଜୁଛି ତୁମକୁ
ମନ-ମନ୍ଦିରେ ମୁଁ ସତତ
ତୁମରି ମହିମା ତୁମରି ବିଭୂତି
ଚିନ୍ତାରେ ପୂରିତ ମୋ ଚିତ୍ତ
ଆହେ ଶିରୀପତି
ଏହା ପରା ଅଟେ ଶ୍ରେଷ୍ଠ ଭକ୍ତି ? ।୯।

ତଥାପି ସ୍ଥିରତା ନଆସେ ମନରେ
ସର୍ବଦା ହୁଏ ଆନ୍ଦୋଳିତ
କଅଣ ଖୋଜୁଛି ଜାଣିତ ପାରେନି
ଚେତାଇ ଦିଅହେ ଶ୍ରୀନାଥ
ଆହେ ସର୍ବଜ୍ଞାଣ
ମୋର ସନ୍ଦେହାଗ୍ନି କର ନିର୍ବାପନ ।୧୦।

## ।। ନିରପେକ୍ଷ ।।

(ମନ୍ଦିର ଯାଇ ଠାକୁର ଦର୍ଶନ କରିବା ସମସ୍ତଙ୍କର କାମ୍ୟ । ମାତ୍ର ସେଥିପାଇଁ ସୁବିଧା ସୁଯୋଗ ସମଭାବରେ ସମସ୍ତଙ୍କୁ ମିଳେ କି ?)

ବିଭିନ୍ନ ଜାଗାରେ ବିଭିନ୍ନ ମନ୍ଦିରେ
ବିଭିନ୍ନ ରୂପରେ ପୁଣି,
ବିଭିନ୍ନ ନାମରେ ବିରାଜିତ ଅଛ
ଭକ୍ତର ମନକୁ ଜାଣି ।୧।

ବିଭିନ୍ନ ଆସ୍ଥାନେ ବିଭିନ୍ନ କ୍ଷମତା
ଧାରଣ କରିଣ ଅଛ,
କାମନାନୁସାରେ ଆରାଧିତ ହୋଇ
ଅଭୀଷ୍ଟ ପୂର୍ଣ୍ଣ କରୁଛ ।୨।

ଦୂର ଦୂରାନ୍ତରୁ ଭକତ ପ୍ରବରେ
ଧାଆନ୍ତି ଦର୍ଶନ ପାଇଁ,
ସମୟ, ସୁଯୋଗ ଅର୍ଥବଳ ଆଦି
ଖଞ୍ଜାଇ ଦେଇଛ ସାଇଁ ।୩।

ଦରଶନ ପୁଣି ପୂଜା ଅରଚନା
ଯାକ ଯମକେ କରନ୍ତି,
ପଣ୍ଡା ପଢ଼ିଆରୀ ଦାନ ଦକ୍ଷିଣାଦି
ପାଇ କୃତାର୍ଥ ହୁଅନ୍ତି ।୪।

ଧନ ସମ୍ପଦାଦି ସଂସାର ସୁଖରେ
ହୋଇଥାନ୍ତି ଢଡସଡ,
ସେହି ମାନଙ୍କର ଦର୍ଶନ ଆଶରେ
ମନ୍ଦିରେ ଜମଇ ଭିଡ଼ ।୫।

ତୁମ ଦରଶନ ସାଙ୍ଗେ ପ୍ରିୟାପ୍ରୀତି
ଦର୍ଶନ ବି ଲାଭ ହୁଏ,
ଠାକୁର ଦର୍ଶନ କନ୍ଦର୍ପୀ ବେପାର
ଏକ ସଙ୍ଗେ ଚାଲିଥାଏ ।୬।

ଗରିବ ବାପୁଡା ଜୀର୍ଣ୍ଣ କୁଡ଼ିଆରେ
ପଡ଼ି ହୁଏ ଛଟ ପଟ,
ଅନ୍ନବସ୍ତ୍ର ମାତ୍ର ଯୋଗାଡ଼ କରିବା
ତା ପକ୍ଷରେ ହୁଏ କଷ୍ଟ ।୭।

ରୋଗ ହେଲେ ତାକୁ ଔଷଦ ନ ମିଳେ
ରୋଗର ଯନ୍ତ୍ରଣା ଭୋଗେ,
ଗରିବର କଥା କିଏ ସେ ଶୁଣିବ
କହିବ ସେ କାହା ଆଗେ ।୮।

ତୁମେ ତ ରହିଛ ଦୂରେ ବହୁଦୂରେ
ଗମ୍ଭୀରି ଭିତରେ ବସି,
ବଡ଼ି ବଡ଼ିଆଏ ଘେରି ରହିଛନ୍ତି
ତୁମକୁ ଲାଗଇ ଖୁସି ।୯।

ବଡ ବଡ଼ିଆଙ୍କ ଦାମିକା ପୂଜାରେ
ହୋଇଥାଅ ତୁମେ ଭୋଳ,
ଗରିବକୁ ଦେଖା ଦେବାକୁ ହେ ପରା
ତୁମକୁ ନ ଥାଏ ବେଳ ।୧୦।

ତୁମ ନିକଟକୁ ଏତେ ଦୂରବାଟ
ଯିବାପାଇଁ ଅର୍ଥ ଲୋଡା,
ଅର୍ଥ ଅଭାବରୁ ତୁମ ଦରଶନୁ
ବଞ୍ଚିତ ହୁଏ ବାପୁଡ଼ା ।୧୧।

ବାରମ୍ବାର ଯାହା ସଙ୍ଗରେ ସାକ୍ଷାତ
ନୁହେଁ କି ସେ ତୁମ ପ୍ରିୟ,
ତୁମ ଅନୁଗ୍ରହ- ଭାଣ୍ଡ ତାହା ପାଇଁ
କେବେ ହୁଏ ନାହିଁ କ୍ଷୟ ।୧୨।

ପେଟ ପାଟି କଟା ସଞ୍ଚିତ ଅର୍ଥରେ
ତୁମ ଦରଶନ ପାଇଁ,
ଅକାଳେ ସକାଳେ ଗରିବ ଚାଲିଲେ
ତୁମେ ତ ଅନାଥ ନାହିଁ ।୧୩।

ପଣ୍ଡା ପଡିଆରୀ ଦ୍ବାରପାଳ ଆଦି
ଯେତେକ ମନ୍ଦିରେ ଥାନ୍ତି,
ଦିନେ କାଳେ ଦେଖା ନାହିଁ ବାପୁଡାର
କହି ଘଉଡ଼ାଇ ଦ୍ୟନ୍ତି ।୧୪।

ଧନୀ ପରି ସେତ ତୁମ ପ୍ରାସାଦରେ
ଆଦର ଲଭଇ ନାହିଁ,
ଅନେକ ସମୟେ ତୁମ ଦରଶନ
ଅସମ୍ଭବ ହୋଇଥାଇ ।୧୫।

ଭେଟି ପୁଣି ତାର ଅତି ଦୟନୀୟ
ତୁମକୁ ଲାଗଇ ଘୃଣ୍ୟ,
ସୁଦୃଷ୍ଟି ବଦଳେ କର୍କଶ କଟାକ୍ଷ
ଲଭିଥାଏ ନିଉଛୁଣା ।୧୬।

ମନ୍ଦିର ପ୍ରାଙ୍ଗଣ ଧନୀ ଭୋଗୀଙ୍କର
ହୋଇଥାଏ ଆଡାସ୍ଥଳ,
ଗରିବ ସେଠାକୁ ଯାଇ ତ ପାରେନା
ଗଲେ ହୁଅଇ ନିଷ୍ଫଳ ।୧୭।

ତୁମ ଅନୁଗ୍ରହେ ଧନିକର ଧନ
ଲାଗିଥାଏ ବଢ଼ିବାରେ,
ଗରିବ ବାପୁଡ଼ା ନିରାଶ୍ରୟ ହୋଇ
କପାଳରେ କର ମାରେ ।୧୮।

ନିୟମ କରିଛ ତୁମ ଦରଶନ
ଲୋଡା ସୁଖୀ ହେବାପାଇଁ,
ଦରଶନ ପାଇଁ ସୁବିଧା ସୁଯୋଗ
ଗରିବଙ୍କୁ ଦିଅ ନାହିଁ ।୧୯।

ପରୋକ୍ଷରେ ସୁଖ ମନା କରିଅଛ
ଗରିବ ପାଇଁକି ସିନା,
ଏଇଥି ପାଇଁ କି ଫର ଫର ଉଡେ
ନିରପେକ୍ଷତାର ବାନା ? ।୨୦।

## ।। ସାଧନା ।।

(ମନକୁ ଭଗବଦ୍-ମୁଖୀ କଲେ ମନୁଷ୍ୟ ସୁଖୀ ହେବ। ମାତ୍ର ତାହା କି ସହଜ? ବିନା ସାଧନାରେ ସିଦ୍ଧି କଅଣ ମିଳେ?)

ମନ ସମର୍ପିଲେ ତୁମକୁ ହେ ପ୍ରଭୁ
ସବୁ ଦୁଃଖ ହୁଏ ଦୂର,
ଇହକାଳେ ଶାନ୍ତି ଇହପରେ ବାସ
ମିଳଇ ତୁମ ପାଖର ।୧।

ଶୁଣିଲେ କଥାଟି ସହଜ ଲାଗଇ
ପାଳନେ କି ତାହା ହୁଏ,
ସବୁ ଛାଡିଛୁଡି ତୁମ ପଦେ ପ୍ରଭୁ
ମନକୁ କିଏ ଲଗାଏ? ।୨।

ଦେଇଛ ଯାହାକୁ ସୁଖ ଓ ସମ୍ପଦ
ତହିଁରେ ସେ ହୁଏ ଭୋଳ,
ତୁମ କଥା ଆଉ ମନେ ଆଣିବାକୁ
ନଥାଏ ତାହାର ବେଳ ।୩।

ଦୁଃଖ ଅଭାବରେ ରଖିଛ ଯାହାକୁ
ଦୁଃଖେ ହୋଇ ସଦା ଘାଣ୍ଟି,
ଦୁଃଖେ ମ୍ରିୟମାଣ ହୋଇ ସେ ତୁମକୁ
ଭୁଲେ, ଏ କଥାଟି ଖାଣ୍ଟି ।୪।

ସୁଖୀ ଦୁଃଖୀଙ୍କର ହୁଅଇ ହେ ପ୍ରଭୁ
ସମାନ ଏଇ ଅବସ୍ଥା,
ମନ ଅରପିଣ ଇହ-ପର ସୁଖ
ପାଇବା ନିୟମ ବୃଥା ।୫।

ସଂସାର ବିରାଗୀ ସନ୍ୟାସୀ ପକ୍ଷରେ
ସମ୍ଭବ ବା ହୁଏ ଏହା,
ସଂସାରୀ ପକ୍ଷରେ ଅକାମୀ ଏ ନୀତି
ନ ଉଠି ରହିଛି ଯାହା ।୬।

ତଥାପି ଭରସା ରହିଛି ଏତିକି
ତୁମ ଅନୁଗ୍ରହ ହେଲେ,
ଅସାଧ ମନ ବି ଅଚଞ୍ଚଳ ହୋଇ
ତୁମ ପଦେ ଲାଖେ ଭଲେ ।୭।

ତୁମ ଅନୁରାଗ ପାଇଁ ଶାସ୍ତ୍ର କହେ
କାମନା ନ ରଖି କିଛି,
ସ୍ୱଧର୍ମ ପାଳିଲେ ଅନୁଗ୍ରହ ଲାଭେ
କଷ୍ଟ ନ ରହିବ କିଛି ।୮।

ନିଷ୍କାମ କରମ ସାଧନା କରିବା
ନୁହେଁ ସହଜ ବ୍ୟାପାର,
କିମ୍ପାଇଁ ଏପରି ଅସାଧ ନିୟମ
ଗଢିଛ ହେ ପରାତ୍ପର ? ।୯।

ଭଲ, ମନ୍ଦ, ଧନୀ, ଗରିବ ଇତ୍ୟାଦି
ଅଶେଷ ଭେଦରେ ଭରା,
ଅତି ବିଷମ ଏ ସମାଜ ଅଟଇ
ଜଟିଳ ଜୀବନ ଧାରା ।୧୦।

ଯାହା ଭଲ ତାହା ପାଇବା ପାଇଁ କି
ସିଦ୍ଧି ସାଧନାଦି ଲୋଡା,
ତା ପାଇଁ ଖଞ୍ଜିଛ ଯେତେ ଯେତେ ନୀତି
ଅତି ପରପଞ୍ଚ ପରା ।୧୧।

ଶାସ୍ତ୍ରରେ ସେ ସବୁ ରହିଛି କେବଳ
ପାଳୁତ ନାହାନ୍ତି କେହି,
ଅକାରଣ ଦୋଷ- ମନ୍ୟତା ବଢୁଛି
ବୁଝ ହେ ଜଗତ ସାଇଁ ।୧୨।

ଯେତେ ଯେତେ ଭେଦ ରହିଛି ସମାଜେ
ସବୁ ଗଲେ ଦୂର ହୋଇ,
ସିଦ୍ଧି ସାଧନାଦି ଲୋଡ଼ା ନ ହୋଇବ
ଶାସ୍ତ୍ର ନୀତି କାହିଁ ପାଇଁ ? ।୧୩।

ଏ ଧରା ବାସୀଙ୍କ ପାଇଁ ଯେବେ ପ୍ରଭୁ
ରହିଛି ଦୟା ତୁମର,
ଦୟା ବହିତାର ଜୀବନ ଧାରାକୁ
ସରଳ ସୁନ୍ଦର କର ।୧୪।

ନିୟମ ଆବଦ୍ଧ ଜଟିଳ ଜୀବନେ
ସିଦ୍ଧି ସାଧନା ତ ନାହିଁ,
ଟଳକୁ ଟଳକୁ ଯାଉଥିବ ସିଏ
ତୁମେ ରହିଥିବ ଚାହିଁ ।୧୫।

## ।। ଭଗବଦ୍ ସ୍ମରଣ ।।

(ଏଥିରେ ଭଗବଦ୍ ସ୍ମରଣକୁ ବନ୍ଧୁ ରୂପେ କଳ୍ପନା କରାଯାଇଛି ।)

ପରବ ପର୍ବାଣି ଭୋଜିଭାତ ଠାରୁ
ବିବାହ ବ୍ରତ ପର୍ଯ୍ୟନ୍ତ,
ଆମୋଦ ପ୍ରମୋଦ କ୍ରିଡା ମଜ୍‌ଲିସ୍
ହୁଏ ମୋ ଘରେ ପାଳିତ ।୧।
କୌଣସି ଉତ୍ସବେ ବନ୍ଧୁଙ୍କର ପାଦ
ପଡ଼େ ନାହିଁ ମୋର ଘରେ,
ଲୁଚି ଛପିକରି ରହନ୍ତି କୁଆଡେ
କି ଆନନ୍ଦ ତାଙ୍କୁ ମିଳେ ? ।୨।
ମାତ୍ର ଯେତେବେଳେ ଜ୍ୱର କି ବାଧକ
ଅବା କୁଟୁମ୍ବରେ ଦୁଃଖ,
ଧନ ହାନି କିମ୍ବା ଶତ୍ରୁର ଜଞ୍ଜାଳ
ଘଟେ ଆସି ମୋର ପାଖ ।୩।
ସେତେବେଳେ ବନ୍ଧୁ କୁଆଡ଼େ ଥାଆନ୍ତି
ହୁଅନ୍ତି ଆସି ହାଜର,
ଆଶା ଆଶ୍ୱାସନା ସଞ୍ଚାରି ମନରେ
ଲାଘବନ୍ତି ଦୁଃଖ ଭାର ।୪।
ତୁଟିଲେ ଜଞ୍ଜାଳ କୁଆଡ଼େ ପଳାନ୍ତି
ନ ମିଳଇ ଆଉ ଦେଖା,
କିପରି ସ୍ୱଭାବ ବନ୍ଧୁଙ୍କର ସତେ
ଇଏ କି ବନ୍ଧୁରେ ଲେଖା ।୫।

ଭଲବେଳେ ଲୋଡ଼ା ନାହିଁ ବୋଲି କ'ଣ
ବନ୍ଧୁ ଆସିବାକୁ ମନା,
ଆଦର ଚରଚା ହୁଅଇ ସେବେଳେ
ବନ୍ଧୁପ୍ରୀତି ବଢ଼େ ସିନା ।୬।

ଅନାଦର କେବେ କରିଅଛି କି ମୁଁ
ସମ୍ପଦରେ ହୋଇ ଭୋଳ,
ସେ ପାଇଁ ବିରାଗ ଭାବ ବହି ମନେ
ହେଉଅଛ ଆଡ ଆଡ ? ।୭।

ସମ୍ପଦର ବନ୍ଧୁ ବିପଦ ବେଳରେ
ଦେଖା ଯଦି ନ ଦିଅଇ,
ନୁହଁଇ ସେ କେବେ ପ୍ରକୃତ ବାନ୍ଧବ
ଶାସ୍ତ୍ର ଏହା କହିଥାଇ ।୮।

ନୁହେଁ ଏହା ଅର୍ଥ ବିପଦର ବନ୍ଧୁ
ସମ୍ପଦରେ ଯଦି ଲୁଚେ,
ପ୍ରକୃତ ବାନ୍ଧବ ତଥାପି ସେ ହେବ
ଶାସ୍ତ୍ର ଯାହା କହୁ ପଛେ ।୯।

ପ୍ରକୃତ ବନ୍ଧୁର ଗୁଣ ହେଲା ଯିଏ
ଦୁଃଖ ସୁଖ ସବୁବେଳେ,
ସାଥୀ ପରି ପାଖେ ପାଖେ ରହିଥାଏ
ଡାକିଲେ ଜବାବ ମିଳେ ।୧୦।

ସେ ପାଇଁ ନେହୁରା ହୋଇ ମୁଁ କହୁଛି
ଶୁଣ ବନ୍ଧୁ ମୋର କଥା,
ଭଲ ମନ୍ଦ ସବୁ- ବେଳେ ସଙ୍ଖୋଳିବ
ତେବେ ସିନା ଘନିଷ୍ଠତା ।୧୧।

## ॥ ଭକ୍ତି ॥

### ॥ ୧ ॥

(ଦୁଃଖ ବେଳେ ମନ ଯେପରି ଭଗବାନଙ୍କ ଆଡକୁ ଯାଏ, ସୁଖବେଳେ ସେପରି ହୁଏ ନାହିଁ। ସେଥିପାଇଁ ଭକ୍ତ ଭଗବାନଙ୍କୁ ଦୁଃଖ ମାଗୁଛି। ଭଗବାନଙ୍କୁ ଭଲ ପାଇଲେ ସେ ନିଶ୍ଚୟ ଭଲ ପାଇବେ।)

ଦୁଃଖବେଳେ ଲୋକ ସ୍ମରେ ପ୍ରିୟଜନେ
ଇଚ୍ଛେ ପାଖେ ପାଇବାକୁ,
ସେହିପରି ପ୍ରଭୁ ଦୁଃଖବେଳେ ତୁମ
କଥା ଛୁଏଁ ମୋ ମନକୁ ।୧।

ସେହିଥିରୁ ମୁହିଁ ଜାଣୁଅଛି ପ୍ରଭୁ
ତୁମେ ଅଟ ମୋର ପ୍ରିୟ,
ମାତ୍ର ମୁଁ ତୁମର ପ୍ରିୟ ଅଟେ ବୋଲି
ମନେ ନ ଆସେ ପ୍ରତ୍ୟୟ ।୨।

ମୁଁ ତୁମର ପ୍ରିୟ ଅଟଇ କି ନାହିଁ
କହି ଦିଅ ପ୍ରଭୁ ବାରେ,
ଯାଉ ମୋ ସନ୍ଦେହ ସ୍ୱଚ୍ଛ ହେଉ ମନ
ବିରାଜ ସଦା ତହିଁରେ ।୩।

ତୁମ ପ୍ରିୟ ହେବା ପାଇଁ ଯଦି ଯୋଗ୍ୟ
ନ ହୋଇଛି ମୁହିଁ ଏବେ,
ମୋ ପ୍ରୀତି କି ପ୍ରଭୁ ନିଷ୍ଫଳ ହୋଇବ
ପ୍ରତ୍ୟାଖ୍ୟାତ ହେବି ଭବେ ।୪।

ଏପରି ହେବାତ ନିୟମରେ ନାହିଁ
ଜଣାଅଛି ମତେ ଭଲେ,
ପ୍ରେମ ଦେଇ ପ୍ରେମ ନ ପାଇବା କଥା
ଶୁଣାତ ନାହିଁ ଭବରେ ।୫।

ତୁମେ ମୋର ପ୍ରିୟ ମୁଁ ତୁମର ପ୍ରିୟ
ସନ୍ଦେହ ନାହିଁ ଏଥିରେ,
ତଥାପି ଟିକିଏ ଭରସା ତୁମଠୁ
ପାଇବାକୁ ମନ ଝୁରେ ।୬।

ଦୁଃଖ ଲାଗି ସିନା ପ୍ରୀତି ତୁମ ସଙ୍ଗେ
ଦୁଃଖ ହେଉ ସହଚର,
ଲଭିବି ସୁଯୋଗ ସଦା ଚିନ୍ତିବାକୁ
ତୁମ ବିଭୁତି ଅପାର ।୭।

॥ ୨ ॥

ବିଷ୍ଣୁପଦେ ନମି  କରୁଛି ଭଣାଣ
ମୋ ଲେଖାର ତ୍ରାଣ ପାଇଁ ।

ଅନାମଧେୟ ମୁଁ  ଲେଖା ପୁଣି ନୀଚ
ସହାୟ ତା'ର ବା କାହିଁ ?

ସ୍ମରି ଶାସ୍ତ୍ର ବାଣୀ  ଭରସା ଲଭଇ
ମନରେ ଜାଗେ ପୁଲକ ।

ବିଷ୍ଣୁ କୃପା ବଳେ  ପଙ୍ଗୁ ଲଙ୍ଘେ ଗିରି
ମୂକ ହୁଏ ବାଦତୂକ ।

ସେହି କୃପା ପ୍ରଭୁ  ଲଭିଲେ ମୋ ଲେଖା
ଦୋଷାଦୋଷ ଲୁଚିଯିବ ।

ମୂକ, ପଙ୍ଗୁପରି  କୃପାରେ ଉଚ୍ଛଳି
ପାଠକେ ମହକ ଦେବ ।

ପ୍ରାର୍ଥନା କରୁଛି  ସେହି କୃପାପ୍ରଭୁ
ଝରୁ ମୋ ଲେଖା ଉପରେ ।

ଲେଖା ତ୍ରାଣ ସଙ୍ଗେ  ଅଧମ ତାରଣ
ହୋଇଯିବ ଭଲେ, ଭଲେ ।

## ॥ ୩ ॥

ପୂର୍ବେ ତିନି କର୍ମ ବିଷ୍ଣୁ ରୂପେ କଲ
ବର୍ଣ୍ଣନା ରହିଛି ପୁରାଣେ
ଗଜ ଉଦ୍ଧାରଣ ମୃଗଣୀ ଚାରଣ
ଦ୍ରୌପଦୀର ଲଜ୍ଜା ବାରଣେ ।୧।

ଜଗନ୍ନାଥ ରୂପେ ତିନୋଟି ଭକ୍ତଙ୍କୁ
ମହିମାରେ କଲ ମଣ୍ଡିତ
ଦାସିଆ ବାଉରୀ ଭକ୍ତ ସାଲବେଗ
ବନ୍ଧୁ ମହାନ୍ତିଙ୍କ ଚରିତ ।୨।

ଏ ଛଅଟି ଛଡ଼ା ଆଉତ କରମ
କାହାଣୀ ଶୁଭୁନାହିଁ
ଭକ୍ତର ମାନ କି ଊଣା ହୋଇଯିବ
ନୂଆ ଭକ୍ତ ହେଲେ କେହି ? ।୩।

ଆଉ କାହାପାଇଁ ରଥ ଅଟକିଲେ
ସାଲବେଗ କି କାନ୍ଦିବ ?
ଆଉ କାହା ହାତୁ ନଡ଼ିଆ ଘେନିଲେ
ଦାସିଆ ମନ କି ଭାଙ୍ଗିବ ? ।୪।

ଚିରା ପରିହିତା ଭିକାରୁଣୀଟିକୁ
ସାଜିଲେ ବସନ ଭୂଷଣେ
ଦୁଃଶା କବଳିତା ଦ୍ରୌପଦୀ କି ସତେ
ଢଳିଯିବ ଅଭିମାନେ ? ।୫।

ଗଜ ଓ ମୃଗଣୀ ପରି ଆଉ କିଏ
ପଡ଼ିଥିଲେ ବିପଦରେ
ଉଦ୍ଧାରିଲେ ତାଙ୍କୁ ଗଜ ମୃଗୁଣୀର
ମାନ କି ପଡ଼ିବ ତଳେ ? ।୬।

ରତ୍ନଥାଳି ଭୋଗ ଦେଲାପରି କର୍ମ
କଲେ ଆଉ କାହା ପାଇଁ
ପୁରୁଣା ବନ୍ଧୁର ମାନ ଊଣା ହେବ
ନୂଆ ଯିବ ବଡ଼ ହୋଇ ? ।୭।

ମଣିଷ ପ୍ରକୃତି ବଦଳିଲା ପରି
ବଦଳିଗଲ କି ତୁମେ
ବଦଳା ବଦଳି ତୁମଠି ନଥାଏ
ଶାସ୍ତ୍ର ବାଣୀ ଶୁଣୁ ଆମେ ।୮।

ଛାଡ଼ ଛାଡ଼ ପ୍ରଭୁ ଉଦାସ ଭାବକୁ
ଆମ ଦୁଃଖେ ମନ ଦିଅ
ସପନରେ ଆସି ଅଧମକୁ ଥରେ
ଭକ୍ତ ବୋଲି ଡାକିଦିଅ ।୯।

ପୂର୍ବ ଛଅକର୍ମ ପରି ଯଦି ତୁମେ
କର୍ମ ସଦା କରୁଥା'ନ୍ତ
କେତେ କେତେ ନୂଆ ଲୋକ ଯା ମଧ୍ୟରେ
ହୋଇ ସାରନ୍ତେଣି ଭକ୍ତ ।୧୦।

ତଥାପି ନିଜକୁ ଭକ୍ତ ଭାବିଲି ମୁଁ
ଆଶା ଧରି ଗଲି ପୁରୀ
ଧରି ପାରିଲିନି ରଥ ଦଉଡ଼ି ମୁଁ
ମନରେ ଦୁଃଖ ଭାରି ।୧୧।

ରଥ ଦଉଡ଼ିକୁ ନଧରିଲେ ମୁଁ
ଚକ ଯଦି ଗଡ଼ିନଥାନ୍ତା
ସାଲବେଗ ସମ ଭକତ ବୋଲି ମୁଁ
ଜଗତ ହିଁ ଜାଣିଥା'ନ୍ତା ।୧୨।

ସେପରି ଉଚ୍ଚାତ କଲନାହିଁ ପ୍ରଭୁ
ଫେରିଲି ନିରାଶ ହୋଇ
ପୁରୁବ ଭକ୍ତଙ୍କ ମାନରକ୍ଷା ପାଇଁ
ତୁମେ ହୋଇଥାଅ ବାଇ ।୧୩।

ଜଣାଗଲା ଏବେ ନୂତନ କରମ
କରୁନାହଁ କାହାପାଇଁ
ସେ ପ୍ରକାର ହେଲେ ପୁରୁଣା ଭକ୍ତର
ମର୍ଯ୍ୟଦା ରହନ୍ତା ନାହିଁ ।୧୪।

ଠିକ୍ ଅଛି ପ୍ରଭୁ ବିଚାର ତୁମର
ଭକତର ମାନ ରହୁ
ଭକ୍ତ ବତ୍ସଳ ବାନାଟି ତୁମର
ଫରଫର ଉଡୁଥାଉ ।୧୫।

ପୂର୍ବେ ଭକ୍ତ ପାଇଁ କରିଛ ଯେପରି
ତାହା ଆଉ କାହାପାଇଁ
ନକରିବ ଯେବେ ଭକ୍ତି ଭାବ ମନୁ
କ୍ରମେ କ୍ରମେ ଯିବ ଧୋଇ ।୧୬।

ଭକ୍ତ ନରହିଲେ ଭଗବାନଙ୍କର
ଗାଇବ ମହିମା କିଏ
ଭକ୍ତ ପାଇଁ ସିନା ଭଗବାନଙ୍କର
ମହିମାଟି ରହୁଥାଏ ।୧୭।

ମୋ ମନର ଭାବ ପ୍ରକାଶିଲି ପ୍ରଭୁ
ନ ଧରିବ ମୋର ଦୋଷ
ଭକ୍ତ କଲେ କର ନକଲେ ନକର
କରିବନି କିନ୍ତୁ ରୋଷ ।୧୮।

|| ୪ ||

ଜପ ତପ ଯେତେ କଲି ମହାପ୍ରଭୁ
ସବୁ ତ ଗ୍ରହଣ କଲ,
ଗ୍ରହୀତା ବି ବୋଲାଇଲ,
ମାତ୍ର ବୁଝେନାହିଁ ଦାନ ନ ଦେଇଣ
ଦାତା ବା କିପରି ହେଲ ? ।୧।

କାହାକୁ କଅଣ ଦେଇଥିବ ଅବା
ମୋତେ ତ ଦେଇନା କିଛି
ମୋର ଜପ ତପ ଗ୍ରହଣ କରୁଛ
ଦାନ କଥାଟି ମୁରୁଛି ।୨।

ଜପିଛି ଭଜିଛି ନାମକୁ ତୁମର
ଭରିଛି ଅନ୍ତରେ ଶ୍ରଦ୍ଧା
ପାଇନାହିଁ କିଛି ଆଶାରେ ବଞ୍ଚିଛି
ମୋ ପଥେ ସକଳ ବାଧା ।୩।

ନ ଦେଇଣ ତୁମେ ଦାତା ବୋଲାଉଛ
ନ ପାଇଲେ ବି ମୁଁ କିଛି
ଶ୍ରୀମନ୍ତ ନକହି ଲକ୍ଷ୍ମୀଛଡ଼ା କହି
କିମ୍ପା କରୁଛନ୍ତି ଛି-ଛି ।୪।

ପଦ୍ମ ଲୋଚନ ନାମ ବହିଛନ୍ତି
କେତେ କେତେ ଅନ୍ଧ ନର
ପାଦ ପାଣି ଯା'ର ବିକଳ ସେ ପୁଣି
ନାମ ବହିଥାଏ ବୀର ।୫।

ତୁମକୁ ଯେପରି କହୁଛନ୍ତି ଦାତା
ଦିଅ ବା ନଦିଅ ଦାନ
ମୋତେ ସେହିପରି କହନ୍ତେ ଶ୍ରୀମନ୍ତ
ନମିକୁ ପଛକେ ଅନ୍ନ
ଏତିକି ମାଗୁଣି ଶୁଣ
ଥାଉ ବା ନଥାଉ ଶୁଭ ପଦବୀରେ
ଭୂଷିତ ହେଉ ମୋ ନାମ ।୬।

ତୁମ୍ଭଠୁ ଆରମ୍ଭି ଜଗତଟା ଯାକ
ଚାଲିଅଛି ଏହି ଧନ୍ଦା
ମୁଁ ଯଦି ତହିଁରେ ଭାଗୀଦାର ହୁଏ
କାହିଁ ହେବ ଅସୁବିଧା ।୭।

|| ୫ ||

ଏ ଦେହରେ ଆଉ ନାହିଁ ପ୍ରୟୋଜନ
ଅନୁଭବ ମୋର ସ୍ଥିର,
କାହିଁକି ଏହାକୁ ବଞ୍ଚାଇ ରଖିଛ
କୁହ ହେ ଦୟାସାଗର ।୧।

ଏତେ କାଳ ବଞ୍ଚି ନ ସାଧିଲି କିଛି,
ଅକର୍ମାରେ ହେଲି ଗଣା,
ଶୟନେ, ସ୍ୱପନେ ଅବା ଜାଗରଣେ
ସାର ଭୋଗିବା ଗଞ୍ଜଣା ।୨।

ଯାହା ତ ହେବାର ହୋଇଗଲା ପ୍ରଭୁ
ନାହିଁ ଅନ୍ୟ ପନ୍ଥା ଆଉ,
ଶୀଘ୍ର ନାଶ ହେଉ ଏ ମୋର ଶରୀର
ସବୁ ଦୁଃଖ ସରିଯାଉ ।୩।

ଭୋଗିବା ଭିତରେ ଗଞ୍ଜଣା ବ୍ୟତୀତ
ଅନ୍ୟ କି ଜୀବନେ ଅଛି,
ଯେତେ ଭୋଗିଲିଣି ସେତିକିରେ ପ୍ରଭୁ
ଦିଅ ମୋର ପାପ ପୋଛି ।୪।

|| ୬ ||

କଅଣ ଦେଇଛ କଅଣ ପାଇଛି
କଅଣ ବା ବାକୀ ଅଛି,
ଅଜ୍ଞାନ ମୁଁ ପ୍ରଭୁ ରଖିନି ହିସାବ
ଜାଣି ନ ପାରୁଛି କିଛି ।୧।

ଦୁଃଖ ହୀନତାରେ ବିତିଲା ଜୀବନ
ସୁଖ, ମାନ ନ ଜାଣିଲି,
ଆଉ ଯେବେ ଦୁଃଖ ଦେବାକୁ ରହିଛି
ଦେବାରେ କିମ୍ପାଇଁ ଡେରି ? ।୨।

ପାରି କରିଅଛି ଦୁଃଖ ହୀନତା ମୁଁ
ଯାଇନି କେବେ ତ ଡରି,
ତୁମଠାରେ ରଖି ଭରସା ମୁଁ ପ୍ରଭୁ
ସବୁ କରିଦେବି ପାରି ।୩।

ନିଃସ୍ୱ ହୋଇ ମଧ ଚାଲୁଛି ଦମ୍ଭରେ
ଧରି ଅଲାଜୁକ ଶିରି,
ଜଣେ ହେଲେ କାହିଁ ଦେଖେନି ମଣିଷ
ନିଃସ୍ୱ ଯିଏ ମୋହପରି ।୪।

ଆଗରେ ପଛରେ ଯିଏ ଯାହା କହୁ,
ବ୍ୟଙ୍ଗ ବିଦ୍ରୂପର ଭାଷା,
ସହିଯିବା ପାଇଁ କରିଅଛି ପଣ
ତୁମଠି ରଖି ଭରସା ।୫।

ତ୍ରୁଟି ପରିପନ୍ଥୀ ହେଲେ ହେଁ କାହାର
କରମ ଅବା ବଚନ,
ପ୍ରତିକ୍ରିୟା କେବେ କରିନି ପ୍ରକାଶ
ଆଦରି ନେଇଛି ମୌନ ।୬।

ମନ୍ଦିରକୁ ଯଦି ଯାଏ କେତେବେଳେ
କରିଥାଏ ପ୍ରଣିପାତ,
ମାଗିଥାଏ ଖାଲି, ଭରସା ତୁମର
ଅନ୍ୟେ ନ ଦେଇଣ ଚିତ୍ତ ।୭।

ଭରସା ତୁମର ଏକକ ପାଥେୟ
ସଂସାର ପଥରେ ମୋର,
ଦିଅ କି ନ ଦିଅ ବିଶ୍ୱାସ ମୋହର
ରହିଥାଉ ବରାବର ।୮।

ମୋ ପରି ଅପାର ପ୍ରାଣୀ ପାଇଁ ପ୍ରଭୁ
ନୋହୁ କାହାର ଜଞ୍ଜାଳ,
ଶ୍ରୀପଦେ ମାଗୁଣି ଏତିକି ଏ ବେଳେ
ଅଚାନକ ପୂରୁକାଳ ।୯।

## ।। ୭ ।।

ସକଳ ଘଟେ ନାରାୟଣ
ବସନ୍ତି ଅନାଦି କାରଣ।

ଏ ଭାବ ମନେ ଦୃଢ଼ କରି
ସବୁ ପ୍ରାଣୀଙ୍କୁ ମଣହରି।

ସମତା ଭାବ ହୃଦେ ବହି
ନିଜର ବଳ ବପୁ ଦେଇ।

ନିଷ୍କାମ ସେବା ଯେ କରଇ
କର୍ମ ଯୋଗୀ ହିଁ ସେ ବୋଲାଇ।

କର୍ମ ଯୋଗରୁ ଜ୍ଞାନ ଲାଭ
ଜ୍ଞାନରୁ ପୁଣି ଭକ୍ତି ଭାବ।

ଏ ତିନି ଯୋଗ ସମିଶ୍ରଣ
କର୍ମୀକୁ ମୁକ୍ତିମାର୍ଗେ ଟାଣେ।

ତାଙ୍କ ସେବାରେ ଦେଲେ ମତି
ପ୍ରଭୁ ସେବାର ଫଳ ପ୍ରାପ୍ତି

କର୍ମ ଯୋଗୀର ମୂଳମନ୍ତ୍ର
ସର୍ବତ୍ର ଦେଖେ ହରିଚିତ୍ର

ଏଇତ ଆଧ୍ୟାତ୍ମିକ ସାର
ମନ ନିବେଶ ଏଥେ କର।

॥ ୮ ॥

ତୁମ ପରି ପ୍ରଭୁ କିଏ ଅଛି ଆଉ
ଦୁଃଖ ନିବେଦିବି ଯାହାକୁ
ସମସ୍ତେ ତ ମୋତେ ଦୁଃଖୀ ପରି ଲାଗେ
ଦୁଃଖ କି କହିବି ଦୁଃଖୀକୁ ?

ପାଇବାକୁ କିଛି ମନ ହେଲେ ପ୍ରଭୁ
ମାଗିବି ସେ ଚିଜ କାହାକୁ
ଦେବାପରି ମୋତେ ଯିଏ ଦେଖାଯାଏ
ଦେଖେ ସେ ମାଗୁଛି ଅନ୍ୟକୁ।

ଏବେ ଯିଏ ଦାତା ପରେ ସେ ମାଗନ୍ତା
ମାଗନ୍ତା ଖୋଜଇ ଦାତାକୁ
ଦାତା କଳା ଏଠି ପାଇ ନାହିଁ କେହି
ଧରିଛନ୍ତି ମାଗଣକୁ
ବଡ଼ ଧନୀ ବୋଲି ସମାଜେ ଯେ ଖ୍ୟାତ
ସେ କି ଛାଡ଼େ ମାଗଣକୁ।

ମାଗଣ ଲୁଣ୍ଠନ କର୍ମାଦିରେ ସିଏ
କାହାର ବା ନୁହେଁ ଆଗକୁ
ତୁମପରି ପ୍ରଭୁ କିଏ ସେ ବନ୍ଧୁଆ
ଅତ୍ୟାଚାରୀର ଦାଉକୁ
ପ୍ରତିହତ କରି ଉଦ୍ଧାରିବ ମୋତେ
ମନ ମୋ ଘେନେନା କାହାକୁ।

ତୁମଭାବ ସଦା ଜାଗ୍ରତ ମନରେ
କ୍ଷମ ସେତ ସବୁ କର୍ମକୁ
ତଥାପି ଅନ୍ୟର ସହାୟ ଭାବନା
କାହିଁକି ଆସଇ ମନକୁ।

ସତେ ମୁଁ ଲୋଡ଼େନି ଅନ୍ୟକୁ
ତୁଳନାରେ ଖାଲି ଦେଖାଉଛି ଯାହା
କେହିସରି ନୁହେଁ ତୁମକୁ।

॥ ୯ ॥

ତୁମେ ପ୍ରଭୁ ଅଟ ଅନନ୍ତ ଅନାଦି
ଶାଶ୍ୱତ ତୁମର ସ୍ଥିତି
ଆମେକ୍ଷୁଦ୍ର ଜୀବ ତୁମ ଛାୟା ମାତ୍ର
ମନରେ ପାରୁନି ଚିନ୍ତି ।୧।

ଅଚିନ୍ତ୍ୟ କହିଣ ମନକୁ ଚିନ୍ତନୁ
ଅବ୍ୟାହତି ଦେଇ ଥାଉ
ଯେତେ ଚିନ୍ତିଲେ ବି ଚିନ୍ତା ସରେ ନାହିଁ
ଅଶେଷ କହିଣ ଥାଉ ।୨।

ତୁମେ ଦୟା କଲେ ପଙ୍ଗୁ ଲଙ୍ଘେ ଗିରି
ମୂକ ହୁଏ ବାବଦୂକ
ସେ ଦୟାରୁ ଟି'କେ ଝରୁ ମୋହ ପାଇଁ
ଚାହିଁଛି ହୋଇ ଚାତକ ।୩।

## || ୧୧ ||

ଦୁଃଖ ବେଳେ ଆମେ ହରିହରି ହେଉ
ସୁଖ ବେଳେ ଭୁଲି ଯାଉ
ସୁଖଟା ଆମର ନିଜସ୍ୱ କୃତିତ୍ୱ
ଦୁଃଖଟା ହରିଙ୍କ ଦାଉ ।
ଏପରି ଭାବନା କେତେ ଈଶ୍ୱରୀୟ
ଜ୍ଞାନ ସେ ବିଷୟେ ନାହିଁ ।
ମଙ୍ଗଳମୟ ସେ ଅମଙ୍ଗଳ ଚିନ୍ତା
ନଥାଏ ତାହାଙ୍କୁ ଛୁଇଁ ।
ତୁମେ ଯାହାକୁ ଦୁଃଖ ବୋଲି କୁହ
ତୁମ ସୁଖ ତହିଁ ନିହିତ
ପ୍ରଭୁଙ୍କ ବିଚାର ବୁଝିବାକୁ ତୁମେ
କେବେ ହୋଇବକି ସମର୍ଥ ?
ଦୁଃଖ ହେଉ ଅବା ସୁଖ ଆସିଯାଉ
ବିଧିବିଧାନରେ ଘଟେ
ଅଜ୍ଞାନରେ ମଜ୍ଜି ଅବୁଝା ଲୋକଟି
ପ୍ରଭୁଙ୍କର ନିନ୍ଦା ରଟେ ।
ତୁମର ନିନ୍ଦାରେ ଅବା ପ୍ରଶଂସାରେ
ପ୍ରଭୁ ବଦଳନ୍ତି ନାହିଁ
ତୁମର ସ୍ୱଭାବ ଇତଃସ୍ତତ ହୁଏ
ପାପଭରା ବଢ଼ିଥାଇ ।

## ॥ ୧୨ ॥

(୧)

ତୁମ ଘର ନାମ ମନ୍ଦିର ଦେଉଳ
ମୋ ଘର ନାମ କୁଡ଼ିଆ
ତୁମ ବସା ସୁଆ ରତ୍ନ ସିଂହାସନ
ମୋର ଖଜୁରୀ ଚଟିଆ

(୨)

ତୁମ ମନ୍ଦିରର ଚାରୁଚିତ୍ରକଳା
ସର୍ବଜନ ମନ ହରେ
ମୋ କୁଡ଼ିଆର ଜୀର୍ଣ୍ଣଶୀର୍ଣ୍ଣ ରୂପ
ଜନମନେ ଘୃଣା ଭରେ ।

(୩)

ମୋ ଘର ଚୁଲି ତିନି ଦିନେ ଥରେ
ଜଳିବାହିଁ ଅସମ୍ଭବ
ତୁମ ମନ୍ଦିରର ଚୁଲିମାନଙ୍କରେ
ଲାଗିଥାଏ ରନ୍ଧା ପରବ ।

(୪)

ତୁମ ଅଗଣାରେ ଗହଳି ରଚନ୍ତି
କେତେ କେତେ ଧନୀମାନୀ
ମୋ କୁଡ଼ିଆରେ ମୋହପାଦ ଭିନ୍ନ
ଆଉ କା ପାଦ ପଡ଼େନି

(୫)

ପରବ ଭେଦରେ ବେଶ ବଦଳାଅ
ସୁନାରେ ବି ଛାଇ ହୁଅ
ଚିରା ପରିହିତ ଚିର ମଳିଛା ମୁଁ
କାହାକୁ ରୁଚିବ କୁହ ?

(୬)

ଭିନ୍ନ ସେବାପାଇଁ ଭିନ୍ନ ସେବାୟତ
ଛତିଶା ନିଯୋଗ ବନ୍ଧା
ମୋ ସେବାପାଇଁ ମୋହ ଗୋଡ଼ ହାତ
ବିଧିର କାଳେ ବ୍ୟବସ୍ଥା ।

(୭)

ତୁମ ମୋ ଭିତରେ ଏପରି ବିଭେଦ
ହେଲେ ଆମେ ବାପପୁଅ
କାନ୍ଦିଲେ ଡାକିଲେ ଶୁଣନାହିଁ ଡାକ
ଗାଳେଇ ଗାଳେଇ ରୁହ ।

(୮)

ନିଜେ ଭୋଗେ ରହି ସନ୍ତାନମାନଙ୍କୁ
କରିଥାଅ ଅବହେଳା
ଦୁଃଖ ଅଭାବରେ ସଢ଼ନ୍ତି ସେମାନେ
ତୁମେ ଆରାମରେ ଭୋଳ ।

(୯)

ମିନତୀ କରୁଛି ଛାଡ଼ ଭୋଳାପଣ
ନ ହେଲେ ଆମକୁଛାଡ଼
ତୁମଠୁ ବନ୍ଧନ କଟିଗଲେ ଆମେ
ପୃଥୀ କରିବୁ ସାବାଡ଼ ।

(୧୦)

ପାପୀ ବା ନାରକୀ କହି ସେତେବେଳେ
ଦୋଷ ଦେଖିବ ଆମଠି

ଦୋଷ ପାଇଁ ଦଣ୍ଡ ଦେବାର କ୍ଷମତା
ରହିଛି ପୁଣି ତୁମଠି।

(୧୧)

ଏ ସବୁ ବ୍ୟବସ୍ଥା ଅଚଳ କରିବୁ
ତୁମେ ହୋଇବ ଅକାମୀ
ତୁମକୁ ମୁଣ୍ଡରେ ବସାଇ ବୃଥାରେ
କରିବୁ ନାହିଁ ବୋକାମି।

(୧୨)

ଆମ କଥା ଆମେ ବୁଝିବୁ ମାତର
ଦୁଃଖ ଲାଗେ ତୁମ ପାଇଁ
ଆମକୁ ଛାଡିକି ବାସ୍ତୁହରା ହେବ
ଏକଥା ଭୁଲନା ସାଇଁ।

(୧୩)

ଦିନଥିଲା ତୁମେ ଲକ୍ଷ୍ମୀଛଡ଼ା ହୋଇ
ବୁଲୁଥିଲ ଅପନ୍ତରା
ସନ୍ତାନେ ବରଜି ବାସ୍ତୁହରା ହେଲେ
ହରାଇବ ପତିଆରା।

(୧୪)

ଧମକ ତୁମକୁ ନୁହେଁ ଏ ଆମର
ଉତ୍କଣ୍ଠିତ ଅନୁନୟ
ଭୋଗ ଯେତେ ଯାହା କରୁଅଛ କର
ଆମକୁ ହୁଅ ସଦୟ।

(୧୫)

ଦୟାମୟ ବୋଲି କହିଥା'ନ୍ତି ବୁଧେ
ଶୁଣି ଆସିଛୁ ସର୍ବଦା
ତୁମ ଅନ୍ତରରେ ଆମ ଶୁଭ କଲ୍ପେ
ଜନମୁ ଟିକିଏ ଶ୍ରଦ୍ଧା

## ॥ ୧୩ ॥

ଲେଖୁଥିଲି ବସି ଗୀତଟିଏ ଦିନେ
ପଚାରିଲା ଆସି ନାତି,
କୁହ କୁହ ଜେଜେ କଅଣ ଲେଖୁଛ
ଚିଠି ଲେଖୁଛ କା କତି ? ।୧।

ଚିଠି ନହେଲେ ବି ଲେଖୁଥିଲି ଯାହା
ଚିଠି ପରି ଥିଲା ତାହା,
ମନର ବିଷାଦ ଜଣାଇ ବିଭୁଙ୍କୁ
ମାଗୁଥିଲି ଟିକେ ସାହା ।୨।

ଏ ଜଟିଳ କଥା ବୁଝନ୍ତା କି ସିଏ
ବୁଝାନ୍ତି ବା କିମ୍ବା ମୁହିଁ,
ଭଗବାନଙ୍କୁ ମୁଁ ଚିଠି ଲେଖୁଅଛି
କହିଲି ଭୁଲାଇ ଦେଇ ।୩।

ଭଗବାନଙ୍କୁ କି ଚିଠି ଲେଖାଯାଏ
ଥିଲା ତାର ପର ପ୍ରଶ୍ନ,
କହିଲି ଦମ୍ଭରେ, ଭଜନ, ଜଣାଣ
ଚିଠି ନୁହେଁ ଆଉ କଅଣ ? ।୪।

ଗଲା କିଛିଦିନ ମନରୁ ଏକଥା
ଭାବିଲି ଯିବଣି ଧୋଇ,
ଆଚମ୍ବିତ କରି ହଠାତ୍ ଦିନେ ସେ
ଆସି ପୁଣି ପଚାରଇ ।୫।

କୁହ କୁହ ଜେଜେ ଭଗବାନଙ୍କଠୁ
ଆସିଗଲାଣି କି ଚିଠି,
ଚିଠି ଦେଲେ ଚିଠି ଉତ୍ତର ସ୍ୱରୂପ
ଆସିଥାଏ ତ ସବୁଠି ।୬।

କହିଲି ବାବୁରେ ଆସିନାହିଁ ଚିଠି
ଆସିଲେ କହିବି ତୋତେ,
ଏ ନାସ୍ତି ବଚନେ ବିବ୍ରତ ହୋଇଲା
ଚେତାବନୀ ଦେଲା ମୋତେ ।୭।

କହିଲା ବୃଥାରେ ଲେଖୁଅଛ ଚିଠି
ଉତ୍ତର ସେ ଦେବେ ନାହିଁ,
ଭଲ ପାଉଥିଲେ ଚିଠି ଦେବାରେକି
ଏତେ ଡେରି କେ କରଇ ? ।୮।

ବୁଝାଇଲି ତାକୁ କହନା ସେପରି
ସଭିଙ୍କୁ ସେ ଭଲପାନ୍ତି,
ବିଶ୍ୱାସରେ ସିଏ ଆସନ୍ତି ପାଖକୁ
ସନ୍ଦେହରେ ଦୂର ଯାନ୍ତି ।୯।

ତାଙ୍କ ପାଖେ କେହି ନୁହଁଇ ଅବନ୍ଧୁ
ପାପୀ, ତପୀ ସବୁ ଏକା,
ପ୍ରତିକାର ନିଶ୍ଚେ କରିଥାନ୍ତି ଶୁଣି
ଆମ ମନଦିଆ ଡକା ।୧୦।

ଡେରି ବୋଲି ସିନା କହୁଅଛେ ଆମେ
ତାଙ୍କ ବିଚାରଟି ଭିନ୍ନ,
ଠିକଣା ବେଳରେ ଠିକ୍ ସମାଧାନ
କରିଥାଆନ୍ତି ପ୍ରେରଣ ।୧୧।

ଆମର କର୍ତ୍ତବ୍ୟ ଧୈର୍ଯ୍ୟ ଅବଲମ୍ବି
ଅପେକ୍ଷା କରିବା କଥା,
ବିଭୁ ଦୟାରେ ଯେ ଆସ୍ଥାବାନ ସଦା
ହୁଏନାହିଁ ତାର ବ୍ୟଥା ।୧୨।

ଚିଠିର ଉତ୍ତର ଲେଖାରେ ଆସଇ
ଆସେ ପୁଣି ଲୋକ ମୁଖେ,
ବେଳେ ବେଳେ ବାର୍ତ୍ତା ପ୍ରାପକ ଦିଅନ୍ତି
ନିଜେ ଆସିଣ ସମ୍ମୁଖେ ।୧୩।

ଏ ତିନି ଉପାୟ ମଧ୍ୟରୁ କୌଣସି
ଗୋଟିକରେ ମୋତେ ବାର୍ତ୍ତା,

ମିଳିବ ବାପରେ କହୁଅଛି ତୋତେ
ଦୂରକର ମନୁ ଚିନ୍ତା ।୧୪।

ବିଶ୍ବଙ୍କ ବାରତା ରହିଛି ଶାସ୍ତ୍ରରେ
ପଢୁ ପଢୁ ତାହା କେବେ,
ସେଥିର କୌଣସି ଭାବ ବାର୍ତ୍ତାରୂପ
ହୋଇ ପ୍ରକଟିବ ତେବେ ।୧୫।

ଏହି ପ୍ରକାରେ ସେ ଲେଖାରେ ଉତ୍ତର
ଦିଅନ୍ତି ଚିଠିଟି ପାଇ,
ଭାବରେ ମଜ୍ଜିଲେ ଏକଥାର ଅର୍ଥ
ବୁଝିବାରେ କଷ୍ଟ ନାହିଁ ।୧୬।

କେତେବେଳେ ଅବା ସାଧୁ, ସନ୍ଥ, ଜ୍ଞାନୀ
ଲୋକ ସଙ୍ଗେ ଆଳାପରୁ,
ମନ ବାଛିନେବ ବାର୍ତ୍ତାଟି ତାହାର
କଥାଟି ଅଡିବ ଗୁରୁ ।୧୭।

ଯୋଗ ନପଡ଼ିଲେ ସାଧୁ ଦରଶନ
ମିଳେନାହିଁ ବୋଲି ଜାଣ,
ବିଶ୍ବ କୃପାବଳେ ସାଧୁ ଦରଶନ
ହୋଇଥାଏ ମନେ ଘେନ ।୧୮।

ନୋହିଁବ ନାହିଁକି ମୋ ପାଖକୁ ବାର୍ତ୍ତା
ଆସିଛି ତାଙ୍କରି ହସ୍ତେ,
ମାନିଯିବ ମନ ଘେନିବ ବାରତା
ନିଃସନ୍ଦେହ ହୋଇ ଚିତ୍ତେ ।୧୯।

ଶୟନ କାଳରେ ଅବା ଜାଗରଣେ
ନିଜ ସମସ୍ୟା ମନନ,
କରୁ କରୁ ବାର୍ତ୍ତା ମିଳିଯିବ ଯାହା
ନିଜେ ସେ କରନ୍ତି ଦାନ ।୨୦।

ଅପେକ୍ଷା କରିଛି ଏପ୍ରକାରେ କେବେ
ମିଳିଗଲେ ମୋତେ ବାର୍ତ୍ତା,
ଆପେ ଆପେ ତୋତେ କହିବି ନାତିରେ
ଅପେକ୍ଷା ବି ତୁ କରିଥା ।୨୧।

## ॥ ୧୪ ॥

ସ୍ୱଦେହେ ଜଡ଼ାଇ ପ୍ରିୟାର ଅଙ୍ଗକୁ
ବାହୁରେ ବେଷ୍ଟନ କରି,
ଆଙ୍କିଲେ ଚୁମ୍ବନ ମିଳେ ଯେଉଁ ସୁଖ
ଅଛି କି ସୁଖ ତା ସରି ?

ଅସରନ୍ତି ରସ ଭଣ୍ଡାର ତା ଅଙ୍ଗ
ଉଛଟି ରହିଛି କାହିଁ,
ଆଖିରେ, ମନରେ, ଭାଷାରେ, ହସରେ
କେଉଁଠି ଥାପିଛି ବିହି ।

ମିଳନ ମାତ୍ରକେ ସର୍ବାଙ୍ଗରେ ତା'ର
ରସର ଝରଣା ବହେ,
ଅଥୟ ହୋଇ ମୁଁ ଏଠି ସେଠି ଏଠି
ଚୁମ୍ବନର ଠିପି ଥୁଏ ।

ଏତେ ରସବତୀ ପ୍ରିୟା ସିନା ମୋର
ମନ ମୋ ପୂରଇ ନାହିଁ,
ବିଚ୍ଛିନ୍ନ ହୋଇଲେ ପୁନର୍ମିଳନକୁ
ଲୋଡ଼େ ହୋଇ ହାଇଁପାଇଁ ।

ଅନୁରୂପ ଭାବ ପ୍ରିୟାର ମୋହର
ଲୋଡ଼େ ନା ସେ କିଛି ଆଉ,
କହେ ସରାଗରେ ଏ ବାହୁ ଭିଡ଼ାରେ
ଦିନ ମୋର ସରିଯାଉ ।

ଶ୍ରୀଯୁକ୍ତ ମହାନ୍ତି ଜଣେ ନୀରବ ସାଧକ। କବିତ୍ୱ ତାଙ୍କର ସହଜାତ। ଭାଷାର କାରିଗରୀ, ଝଟଚମଟ ବା ଆଡ଼ମ୍ବର ଉପରେ ସେ ବିଶ୍ୱାସ କରନ୍ତି ନାହିଁ। ଭାବକୁ ନେଇ ତାଙ୍କର କାରବାର। ଭାବର ଗାମ୍ଭୀର୍ଯ୍ୟ ହିଁ ତାଙ୍କ ରଚନାର ବୈଶିଷ୍ଟ୍ୟ। ନିଜର ଚିନ୍ତା ଓ ଚେତନାକୁ ସରଳ ଓ ସାବଲୀଳ ଭାଷାରେ ଅଭିବ୍ୟକ୍ତ କରି ସେ ପାଠକମାନଙ୍କ ହୃଦୟକୁ ଅଭିଭୂତ କରିଦିଅନ୍ତି।

ତାଙ୍କର କବି ଚିତ୍ତଟି ସ୍ୱଭାବତଃ ଭାବପ୍ରବଣ ଓ ସମ୍ବେଦନଶୀଳ। ସେ ନିବିଡ଼ ଭାବରେ ଭଲ ପାଆନ୍ତି ମଣିଷକୁ, ପ୍ରକୃତିକୁ ଓ ସମଗ୍ର ବିଶ୍ୱକୁ। ସେ ସମାଜର ଜାଗ୍ରତ ପ୍ରହରୀ। ସେଥିପାଇଁ ସମାଜର ବହୁ ସମସ୍ୟାକୁ ସେ ଖାଲି ତାଙ୍କ ରଚନାରେ ଉପସ୍ଥାପନ କରିନାହାନ୍ତି, ସେଗୁଡ଼ିକର ସମାଧାନ କରିବାକୁ ମଧ୍ୟ ପ୍ରୟାସ କରିଛନ୍ତି।

ଶ୍ରଦ୍ଧା, ସମର୍ପଣ ଓ ସଦ୍‌ଭାବନାର ଅର୍ଘ୍ୟ ବିଭୁଙ୍କୁ ଅର୍ପଣ କରି କବି ନିଜକୁ କୃତାର୍ଥ ମନେ କରିଛନ୍ତି। ବିଭୁକୃପା ଲାଭ ହିଁ ତାଙ୍କର ଏକମାତ୍ର ଅଭୀପ୍‌ସା। ତାଙ୍କୁ ସେ କେବଳ ଗୋଟିଏ ବର ମାଗିଛନ୍ତି–ପ୍ରଭୁ ତାଙ୍କୁ ତାଙ୍କର ଜଣେ ନିଷ୍ଠାପର ଓ ଅନନ୍ୟଚିତ୍ତ ଭକ୍ତ ଭାବରେ ଗ୍ରହଣ କରନ୍ତୁ। ସ୍ମରଣ, ଭଜନ ଓ ଶ୍ରବଣ– ଏହି ତିନିଗୋଟି ମାର୍ଗରେ ଅବିଚଳିତ ରହିଲେ ପ୍ରଭୁଙ୍କୁ ପାଇହେବ ବୋଲି କବି ବିଶ୍ୱାସ କରନ୍ତି।

ତାଙ୍କ ମତରେ, ପ୍ରକୃତଭକ୍ତ କିଛି ମାଗେ ନାହିଁ– ଖାଲି 'ଶରଧାବାଲିରୁ ହାତେ' ମାଗେ ଓ ପ୍ରଭୁ ତାର କାମନାର ପାତ୍ରକୁ ଅଯାଚିତ ପରିପୂର୍ଣ୍ଣ କରିଦିଅନ୍ତି କରୁଣାର ବାରିରେ। ତାଙ୍କ ଭଗବାନ 'ଦ୍ରବ୍ୟଗ୍ରାହୀ' ନୁହନ୍ତି – 'ଭାବଗ୍ରାହୀ'। ସେ ଚିର ମଙ୍ଗଳମୟ।

